Licence No. C.R.N.P. 5—Licensed to post without Pre-payment




ଇବ୍ ତାପଜ ବିଦ୍ୟୁତ୍ ପ୍ରକଳ୍ପ ୩ୟ ଓ ୪ର୍ଥ ୟୁନିଟ୍‌ର (୨× ୨୧୦ ମେଗାୱାଟ୍) ଶୁଭ ଶିଳାନ୍ୟାସ ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଉଦ୍‌ବୋଧନ ଦେଉଛନ୍ତି । କେନ୍ଦ୍ର ଶକ୍ତି ମନ୍ତ୍ରୀ ଶ୍ରୀ ଏନ୍. କେ. ପି. ସାଲ୍‌ଭେ, ରାଜ୍ୟ ଶକ୍ତି ମନ୍ତ୍ରୀ ଶ୍ରୀ କାଳିନ୍ଦୀ ବେହେରା ଓ ଏ. ଇ. ଏସ୍. ନିଗମର ଅଧ୍ୟକ୍ଷ ଶ୍ରୀ ଡେନିସ୍ ବେକ୍ ଉକ୍ତ ଉତ୍ସବରେ ଯୋଗଦାନ କରିଛନ୍ତି ।

PRINTED AT ORISSA GOVERNMENT PRESS, CUTTACK-753010





ସଚିବାଳୟଠାରେ ଅନୁଷ୍ଠିତ ଜିଲ୍ଲାପାଳ ସମ୍ମିଳନୀକୁ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଉଦ୍‌ଘାଟନ କରୁଛନ୍ତି ।




ରାଜଧାନୀ ପ୍ରତିଷ୍ଠା ଦିବସ ଉପଲକ୍ଷେ ଆୟୋଜିତ ଏକ ଉତ୍ସବରେ ବିଧାନ ସଭା ବାଚସ୍ପତି ଶ୍ରୀ ଯୁଧିଷ୍ଠିର ଦାସ ଅଭିଭାଷଣ ଦେଉଛନ୍ତି ।

# ଉତ୍କଳ ପ୍ରସଙ୍ଗ

୫୦ ଭାଗ ୧୦ମ ସଂଖ୍ୟା ବୈଶାଖ ୧୯୧୫ ଶକାବ୍ଦ ମେ ୧୯୯୪

## ସମ୍ପାଦକ ମଣ୍ଡଳୀ



ମୁଦ୍ରଣ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ-୧୦

ପ୍ରକାଶକ
**ଶ୍ରୀ ସୁରସେନ ଜେନା**, ନିର୍ଦ୍ଦେଶକ
ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଓଡ଼ିଶା ସରକାର
ଭୁବନେଶ୍ୱର

ବାର୍ଷିକ ଦେୟ : ଟ ୨୦·୦୦
ପ୍ରତି ଖଣ୍ଡ : ଟ ୨·୦୦

# ସୂଚୀ



निर्माय गीतगोविन्दं काव्यं श्रीपुरुषोत्तमे
निवेद्य कृत्यकृत्योऽसौ जयदेव महामना

**କବିରାଜ ଜୟଦେବ**

**Kaviraj Jayadev**

(An artist's impression)



# ସାଂସ୍କୃତିକ ଜାଗରଣ ଆବଶ୍ୟକ

ଜାତି ସହିତ ସଂସ୍କୃତି ଅତି ନିବିଡ଼ ଭାବରେ ବନ୍ଧା, ସଂସ୍କୃତିକୁ ସାଙ୍ଗରେ ବହନ କରି ଯେ କୌଣସି ଜାତି ସମୃଦ୍ଧ ହୋଇଥାଏ ଏବଂ ଯୁଗ ଯୁଗ ଧରି ବଞ୍ଚି ରହେ । ସୁତରାଂ, ସଂସ୍କୃତି ହିଁ ଜାତିର ମୂଳ ସ୍ତମ୍ଭ ଏବଂ ସେହି ସାଂସ୍କୃତିକ ସ୍ତମ୍ଭ ହିଁ ଜାତିର ମାନ ନିରୂପଣ ପାଇଁ ମାପକାଠି ।

ଓଡ଼ିଆ ଜାତିର ଗୌରବମୟ ସଂସ୍କୃତି ସମ୍ପର୍କରେ ଆଲୋଚନା କଲାବେଳେ 'କବି ଜୟଦେବ' ଏବଂ 'କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ କଥା ସ୍ୱତଃ ସ୍ମରଣକୁ ଆସେ । ଏ ଜାତିର ସାଂସ୍କୃତିକ ସ୍ତମ୍ଭକୁ ସୁଦୃଢ଼ କରିବା ପାଇଁ ଜଗତର ନାଥ ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ଭକ୍ତି ଅର୍ଘ୍ୟ ରୂପେ "କବି ଜୟଦେବ" ସଂସ୍କୃତ ଭାଷାରେ "ଗୀତ ଗୋବିନ୍ଦ" ରଚନା କରି ଅମୂଲ୍ୟ ରତ୍ନ ଦେଇ ଯାଇଛନ୍ତି । ସେହିଭଳି "କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ" ଓଡ଼ିଆ ଭାଷାରେ କାବ୍ୟର କୋଣାର୍କ ଗଢ଼ି ଓଡ଼ିଆ ଭାଷାର ଉତ୍କର୍ଷତା ପ୍ରତିପାଦନ କରିଛନ୍ତି । ସଂକ୍ଷେପରେ କହିବାକୁ ଗଲେ, ଏ ଜାତିର ସାଂସ୍କୃତିକ ସ୍ତମ୍ଭକୁ ସୁଦୃଢ଼ କରିବାରେ ସେମାନଙ୍କ ଅବଦାନ ଅତୁଳନୀୟ । ଏ ଜାତି କଦାପି ସେମାନଙ୍କୁ ଭୁଲି ପାରିବ ନାହିଁ ।

ସେହି ସ୍ମରଣୀୟ ପ୍ରତିଭାର ସ୍ମୃତି ସ୍ମରଣ କରି "ଶ୍ରୀଜୟଦେବ ଟ୍ରଷ୍ଟ" ଉଦ୍ୟମରେ ଜୟଦେବଙ୍କ ଜନ୍ମ ସ୍ଥାନ ପୁରୀ ଜିଲ୍ଲାର କେନ୍ଦୁଲି ଗ୍ରାମରେ ଓ ରାଜ୍ୟ ସରକାରଙ୍କ ଉଦ୍ୟମରେ ରାଜ୍ୟ ସୂଚନା ଭବନ ତଥା ଅନ୍ୟାନ୍ୟ ସ୍ଥାନରେ ଜୟଦେବ ଜୟନ୍ତୀ ଉତ୍ସବ ପାଳନ ହୋଇ ଆସୁଛି ।

'କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ'ଙ୍କ ଜୟନ୍ତୀ ଉତ୍ସବ ମଧ୍ୟ ବିଶେଷ କରି ଏହି ମଇ ମାସରେ ପାଳନ ହେଉଛି । 'କଳିଙ୍ଗ ଭାରତୀ' ଅନୁଷ୍ଠାନ ପକ୍ଷରୁ ପ୍ରତି ବର୍ଷ ମଇ ମାସ ୧୬ ତାରିଖଠାରୁ ୨୨ ତାରିଖ ପର୍ଯ୍ୟନ୍ତ ସାତଦିନ ଧରି କଟକ ସହରରେ ଭଞ୍ଜ ଜୟନ୍ତୀ ପାଳନ ହେଉଥିବାବେଳେ 'ଉତ୍କଳ ପରିଷଦ' ପକ୍ଷରୁ ମଇ ମାସ ୨୬ ତାରିଖ ଏବଂ ୨୭ ତାରିଖ ଦୁଇଦିନ ଧରି ବ୍ରହ୍ମପୁର ସହରରେ ଭଞ୍ଜ ଜୟନ୍ତୀ ଉତ୍ସବ ବହୁ ଆଡ଼ମ୍ବରରେ ପାଳନ ହୋଇ ଆସୁଛି । 'ମହାଜନଃ ଯେନ ଗତଃ ସଃ ପନ୍ଥାଃ' ନୀତିରେ ଆହୁରି ଅନେକ ସାଂସ୍କୃତିକ ଅନୁଷ୍ଠାନ ମଧ୍ୟ ଏହି ମାସରେ ଭଞ୍ଜ ଜୟନ୍ତୀ ପାଳନ କରୁଛନ୍ତି । ଗୁଣଗ୍ରାହୀ ଓଡ଼ିଆ ଜାତିର ଭାଇଭଉଣୀଙ୍କ ସ୍ୱର ସହିତ ସ୍ୱର ମିଳାଇ ଆମେ ମଧ୍ୟ ଉତ୍କଳ ପ୍ରସଙ୍ଗର ମଇ ମାସ ସଂଖ୍ୟାକୁ କେତେବେଳେ ଜୟଦେବ ବିଶେଷାଙ୍କ ତ ଆଉ କେତେବେଳେ ଭଞ୍ଜ ବିଶେଷାଙ୍କ କରିଛୁ । ଅବଶ୍ୟ ପରିସ୍ଥିତି ଦୃଷ୍ଟିରୁ ସବୁ ସମୟରେ ସ୍ୱତନ୍ତ୍ର ସଂଖ୍ୟା ପ୍ରକାଶ କରିବା ସମ୍ଭବ ନୁହେଁ । ତଥାପି ସେଭଳି କ୍ଷେତ୍ରରେ ସ୍ମୃତି ସ୍ମରଣ ନିମନ୍ତେ ସ୍ୱତନ୍ତ୍ର ପ୍ରବନ୍ଧ ଉପସ୍ଥାପନ କରି ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଅର୍ପଣ କରି ଆସିଛୁ ।

ସେହି ପ୍ରତିଭା ପୂଜା ପରମ୍ପରାକୁ ଅକ୍ଷୁଣ୍ଣ ରଖି ଚଳିତ ମଇ ସଂଖ୍ୟା ଉତ୍କଳ ପ୍ରସଙ୍ଗରେ 'କବି ଜୟଦେବ' ଏବଂ 'କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ'ଙ୍କ ସମ୍ପର୍କରେ ସ୍ୱତନ୍ତ୍ର ପ୍ରବନ୍ଧ ଉପସ୍ଥାପନ କରି ସମ୍ଭ୍ରାନ୍ତ ପାଠକ-ପାଠିକାମାନଙ୍କ ସହିତ ଆମେ ଆମର ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛୁ । 'କବି ଜୟଦେବ' ଏବଂ 'କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ'ଙ୍କ ଜୟନ୍ତୀ ଉତ୍ସବ ଅବସରରେ ସ୍ମୃତି ସ୍ମରଣ ପୂର୍ବକ ଶ୍ରଦ୍ଧା ନିବେଦନ କରିବା ସାଙ୍ଗକୁ ସାଂସ୍କୃତିକ ଜାଗରଣ ଆଣିବା ନିମନ୍ତେ ଏ ଜାତିକୁ ଜାଗ୍ରତ କରିବା ସଂକଳ୍ପ ନେଇ ପାରିଲେ ସେହି ସଂକଳ୍ପ ହିଁ ହେବ ବାସ୍ତବ ଶ୍ରଦ୍ଧାଞ୍ଜଳି – ସର୍ବଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି ।

[illegible]

# ଭକ୍ତ କବି ଜୟଦେବ ଓ ଗୀତଗୋବିନ୍ଦ

**ଶ୍ରୀ କାଳନ୍ଦୀ ଚରଣ ସେନାପତି**

କବି ହିଁ ଦ୍ରଷ୍ଟା, ମାନବ ସମାଜର ପଥ ପ୍ରଦର୍ଶକ । ଅଜ୍ଞାନ ମାନବର ପ୍ରାଣ ସତ୍ତାକୁ ଉଚ୍ଚତର ମହତ୍ତର ସ୍ୱର୍ଗୀୟ ପ୍ରେମର ଧାରାରେ ରସାଣିତ କରିବା ପାଇଁ କବି ମାନସ ସଦା ତତ୍ପର । ବିଷ୍ଣୁ ପୁରାଣ'ରେ ବର୍ଣ୍ଣିତ ଅଛି :

"କାବ୍ୟାଳାପାଂଶ୍ଚ ଯେ କେଚିଦ୍ ଗୀତକାନ୍ୟଖିଳାନିଚ ।
ଶବ୍ଦ ମୂର୍ତ୍ତି ଧର ସୈ ତଦ୍ ବପୁର୍ବିଷ୍ଣୋର୍ମହାତ୍ମନଃ ॥"

କବିଙ୍କ ସୃଷ୍ଟି ସମ୍ଭାରରେ ବିଶ୍ୱବ୍ୟାପୀ ବିଷ୍ଣୁଙ୍କର ଶବ୍ଦମୟ ସ୍ୱରୂପ ପ୍ରକଟିତ ହୋଇଥାଏ । ସୁତରାଂ କବିଙ୍କ ଜନ୍ମ ହିଁ ଜଗତରେ ଦୁର୍ଲ୍ଲଭ । ପୁନଶ୍ଚ, 'ଅଗ୍ନିପୁରାଣ'ରେ କୁହାଯାଇଛି :

"ନରତ୍ୱଂ ଦୁର୍ଲ୍ଲଭଂ ଲୋକେ ବିଦ୍ୟାତତ୍ର ସୁଦୁର୍ଲ୍ଲଭା ।
କବିତ୍ୱଂ ଦୁର୍ଲ୍ଲଭଂ ତତ୍ର ଶକ୍ତିସ୍ତତ୍ର ସୁଦୁର୍ଲ୍ଲଭା ॥"

ଜୀବବିକାଶର ବହୁ ପର୍ଯ୍ୟାୟ ଦେଇ ମନୁଷ୍ୟ ଆବିର୍ଭୂତ ହୋଇଛି । ତେଣୁ ଜଗତରେ ମାନବ ଜନ୍ମ ହିଁ ଦୁର୍ଲ୍ଲଭ ଜନ୍ମ ବୋଲି କୁହାଯାଇଛି । ପୁଣି ଯେଉଁ ମନୁଷ୍ୟ ଚେତନାରେ ବିଦ୍ୟାର ଉନ୍ମେଷ ଘଟିଛି ସେହି ବିଦ୍‌ବତ୍ତାସମ୍ପନ୍ନ ମାନବ ଜଗତରେ ଦୁର୍ଲ୍ଲଭ । ଯେଉଁ ବିଦ୍ୱାନମାନଙ୍କ ମଧ୍ୟରେ କବିତ୍ୱର ସ୍ଫୁରଣ ଘଟିଛି ସେମାନେ ତଦୁପରି ଦୁର୍ଲ୍ଲଭ । ସର୍ବୋପରି ଦୁର୍ଲ୍ଲଭ ହେଲେ ପ୍ରତିଭାବାନ କବି ।

ଉପରୋକ୍ତ ଦୃଷ୍ଟିକୋଣରୁ ବିଚାର କଲେ କବି ଜୟଦେବ ଯେ ଜଣେ ଅସାଧାରଣ ପ୍ରତିଭାବନ ସ୍ରଷ୍ଟା ଏଥିରେ ସନ୍ଦେହ ନାହିଁ । ପୁରୀ ଜିଲ୍ଲାର ପ୍ରାଚୀ ନଦୀ ତୀରବର୍ତ୍ତୀ କେନ୍ଦୁବିଲ୍ୱ ନାମକ ଏକ ଗ୍ରାମରେ କବିଙ୍କର ଜନ୍ମ । ତାଙ୍କ ପିତାଙ୍କ ନାମ ଭୋଜଦେବ ଓ ମାତାଙ୍କ ନାମ ରାଧା ଦେବୀ । ଜୟଦେବଙ୍କ ଜନ୍ମ ସ୍ଥାନ କେନ୍ଦୁବିଲ୍ୱ ବୋଲି ମୈଥିଳୀ ପଣ୍ଡିତ ଚନ୍ଦ୍ରଦତ୍ତ ତାଙ୍କ 'ଭକ୍ତମାଳା' ପୁସ୍ତକରେ ଉଲ୍ଲେଖ କରିଛନ୍ତି । ନୀଳାଦ୍ରୀ ମଣ୍ଡନ ଶ୍ରୀଜଗନ୍ନାଥଙ୍କ ଉପାସନାରେ ଦିନ ଅତୀତ କରି ଜୟଦେବ 'ଗୀତଗୋବିନ୍ଦ' ପରି ଏକ ଅପୂର୍ବ ରସମୟ କାବ୍ୟ ରଚନା କରିପାରିଛନ୍ତି ବୋଲି ମୈଥିଳୀ ପଣ୍ଡିତଙ୍କ ମତ । ତାଙ୍କ ରଚନା ଅନୁସାରେ :

"ଜଗନ୍ନାଥ ପୁରୀ ପ୍ରାନ୍ତେ ଦେଶେ ଚୈବୋତ୍କଳାଭିଧେ
କେନ୍ଦୁବିଲ୍ୱ ଇତି ଖ୍ୟାତୋ ଗ୍ରାମୋ ବ୍ରାହ୍ମଣସଂକୁଳଃ
ତତ୍ରୋତ୍କଳେ ଦ୍ୱିଜୋ ଜାତୋ ଜୟଦେବ ଇତିଶ୍ରୁତଃ
ବିଦ୍ୟାଭ୍ୟାସ ରତଃ ଶାନ୍ତଃ ପୁରୁଷୋତ୍ତମ ପୂଜକଃ ।"

ଭକ୍ତ କବି ଜୟଦେବଙ୍କର ପଦ୍ମାବତୀଙ୍କ ସହ ଶୁଭପରିଣୟ ଜୀବନରେ ଏକ ସୁନ୍ଦର କିମ୍ବଦନ୍ତୀ ପ୍ରଚଳିତ ଅଛି । ପଦ୍ମାବତୀ ଥିଲେ ଦାକ୍ଷିଣାତ୍ୟ ବ୍ରାହ୍ମଣ ଦେବ ଶର୍ମାଙ୍କର କନ୍ୟା । ସ୍ୱପ୍ନାଦେଶରେ ଆଦିଷ୍ଟ ହୋଇ ଦେବ ଶର୍ମା କନ୍ୟା ପଦ୍ମାବତୀକୁ ସାଥିରେ ଧରି ପୁରୁଷୋତ୍ତମ କ୍ଷେତ୍ରକୁ ଯାଇଥିଲେ । କନ୍ୟାକୁ ଦେବଦାସୀ କରିବାର ସଂକଳ୍ପ ନେଇଥିଲେ ଦେବ ଶର୍ମା । ହେଲେ ଇଚ୍ଛାମୟ ଶ୍ରୀଜଗନ୍ନାଥଙ୍କ ଇଚ୍ଛା ଥିଲା ଅନ୍ୟ ପ୍ରକାରର । ସ୍ୱପ୍ନାଦେଶରେ ପ୍ରଭୁ ଦେବ ଶର୍ମାଙ୍କୁ କହିଥିଲେ, ପଦ୍ମାବତୀକୁ ତାଙ୍କ ଭକ୍ତ ଜୟଦେବ ହସ୍ତରେ ସମର୍ପଣ କରିବାକୁ । ପ୍ରଭୁଙ୍କ ଆଦେଶ ଅନୁସାରେ ଦେବ ଶର୍ମା ତାଙ୍କ କନ୍ୟାକୁ ଜୟଦେବଙ୍କ ହାତରେ ଅର୍ପଣ କରି ଦେଇଥିଲେ । ଜୟଦେବ ରଚନା କଲେ ଗୀତଗୋବିନ୍ଦ । ତାଙ୍କ ରଚିତ କାନ୍ତ କୋମଳ ପଦାବଳୀକୁ ନୃତ୍ୟ ମାଧ୍ୟମରେ ଜୀବନ୍ତ କରୁଥିଲେ ପଦ୍ମାବତୀ । ଗୀତଗୋବିନ୍ଦରେ ପଦ୍ମାବତୀଙ୍କ ନାମ ଜୟଦେବ କେତେକ ସ୍ଥାନରେ ଉଲ୍ଲେଖ କରିଛନ୍ତି :

"ବାଗ୍ ଦେବତା ଚରିତ ଚିତ୍ରିତ ଚିତ୍ତ ସଦ୍ମା
ପଦ୍ମାବତୀ–ଚରଣ–ସ୍ମରଣ–ଚକ୍ରବର୍ତ୍ତୀ ।"

ଜୟଦେବଙ୍କ ଗୀତଗୋବିନ୍ଦ ରଚନା ମୂଳରେ ଏକ ଐତିହାସିକ ପୃଷ୍ଠଭୂମି ରହିଛି । ଯେତେବେଳେ ଭୌମକର ରାଜବଂଶ ଅମଳରେ ଉତ୍କଳରୁ ବୌଦ୍ଧ ଧର୍ମ ବିଲୁପ୍ତ ହୋଇ ଶୈବ ଓ ଶାକ୍ତ ଉପାସନା ପ୍ରତିଷ୍ଠିତ ହୋଇଥିଲା, ସେତେବେଳେ ଏହି ଦୁଇ ସମ୍ପ୍ରଦାୟ ବାମମାର୍ଗୀ ଓ ଦକ୍ଷିଣମାର୍ଗୀ ଏହି ଦୁଇଟି ଭାଗରେ ବିଭକ୍ତ ହୋଇ ଯାଇଥିଲେ । ଦକ୍ଷିଣପନ୍ଥୀ ତାନ୍ତ୍ରୀକମାନେ ତନ୍ତ୍ରର ଯୋଗ ବିଧାନର ଅନୁସରଣ କରି ମୋକ୍ଷପ୍ରାପ୍ତିର ମାର୍ଗ ଅନ୍ୱେଷଣ କରୁଥିଲେ । ଅପରପକ୍ଷେ ବାମମାର୍ଗୀମାନେ ମଦ୍ୟ, ମାଂସ, ମୈଥୁନ, ମୁଦ୍ରା ଓ ମତ୍ସ୍ୟ ପ୍ରଭୃତି ପଞ୍ଚ 'ମ' କାରର ପ୍ରଚଳନ କରାଇ ସମାଜରେ ଲୋକ ପ୍ରିୟତା ଅର୍ଜନ କରିଥିଲେ । ବାମପନ୍ଥୀ ତାନ୍ତ୍ରୀକମାନେ ମାରଣ, ମୋହନ, ବଶ ଓ ଉଚ୍ଚାଟନ ପ୍ରଭୃତିର ପ୍ରୟୋଗ ଦ୍ୱାରା ସାମାଜିକ ଜୀବନକୁ ବିଭ୍ରାନ୍ତ କରିଥିଲେ । ଏହି ସମୟରେ ବୌଦ୍ଧ ତାନ୍ତ୍ରୀକମାନେ ବଜ୍ରଯାନୀ ରୂପେ ପରିଚିତ ହୋଇ ବାମମାର୍ଗୀଙ୍କ ସହ ମିଶି ଯାଇଥିଲେ । ସେମାନଙ୍କ ଦୌରାତ୍ମ୍ୟରେ ସାମାଜିକ ପରିସ୍ଥିତି ବିଶୃଙ୍ଖଳ ହେବା ସଙ୍ଗେ ସଙ୍ଗେ ତତ୍କାଳୀନ ଶାସକବର୍ଗମାନେ ମଧ୍ୟ ବିଶେଷ ଭାବେ ପ୍ରଭାବିତ ହୋଇଥିଲେ । ଫଳରେ ଶାସନ କ୍ଷେତ୍ରରେ ପ୍ରବଳ ବିଶୃଙ୍ଖଳା ସୃଷ୍ଟିହେଲା । ଗଙ୍ଗ ବଂଶୀୟ ପ୍ରଖ୍ୟାତବୀର ଅନନ୍ତବର୍ମା ଚୋଡ଼ଗଙ୍ଗଦେବ ସୋମବଂଶୀଙ୍କ ବିରୁଦ୍ଧରେ ଯୁଦ୍ଧ ଚଳାଇ ଉତ୍କଳର ଉତ୍କଳର ଶାସନ କ୍ଷମତା ହାତକୁ ନେଇଥିଲେ । ଚୋଡ଼ଗଙ୍ଗ ଦେବ ତାଙ୍କର ଶାସନ କାଳ ମଧ୍ୟରେ କଳିଙ୍ଗ, କୋଶଳ ଓ ଉତ୍କଳକୁ ମିଶାଇ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିଶାଳ ସାମ୍ରାଜ୍ୟ ଗଠନ କରିଥିଲେ ।

ଚୋଡ଼ଗଙ୍ଗ ଦେବ ଥିଲେ ପରମ ବୈଷ୍ଣବ । ଜାତୀୟ ବିଗ୍ରହ ଶୈବଙ୍କୁ ବିଷ୍ଣୁ ବା ସପ୍ତଧା ମୂର୍ତ୍ତିର ସମନ୍ୱିତ ବିଗ୍ରହ ରୂପେ ପୁରୁଷୋତ୍ତମ ଜଗନ୍ନାଥ ନାମରେ ସୁପରିଚିତ କରାଇଥିଲେ । ଚୋଡ଼ଗଙ୍ଗ ଦେବ ଶ୍ରୀମନ୍ଦିରର ନିର୍ମାଣ କାର୍ଯ୍ୟ ଆରମ୍ଭ କରି ସେଠାରେ ବିଷ୍ଣୁଙ୍କ ପ୍ରାଧାନ୍ୟ ଅକ୍ଷୁଣ୍ଣ ରଖିଥିଲେ । ଅନନ୍ତର ବୈଷ୍ଣବ ମତବାଦର ପ୍ରସିଦ୍ଧ ଆଚାର୍ଯ୍ୟ ନିମ୍ବାର୍କ ଓ ବିଶିଷ୍ଟା ଦ୍ୱୈତବାଦୀ ରାମାନୁଜାଚାର୍ଯ୍ୟ ନିଜ ନିଜର ସିଦ୍ଧାନ୍ତ ପ୍ରଚାର କରିବା ପାଇଁ ପୁରୀ ଧାମରେ ମଠ ସ୍ଥାପନ କରିଥିଲେ । ଏହି ସମୟରେ ଜୟଦେବ ଗୀତଗୋବିନ୍ଦ ପରି ଭକ୍ତି ପ୍ରଧାନ କାବ୍ୟ ରଚନା କରି ସ୍ୱୀୟ ପ୍ରତିଭାର ନିଦର୍ଶନ ଦେଇଛନ୍ତି ।

ପାର୍ଥିବ ପ୍ରୀତି ସମ୍ବଳିତ ରାଧା–କୃଷ୍ଣ ପ୍ରଣୟ ଚିତ୍ରର ସାର୍ଥକ କାବ୍ୟ ଗୀତଗୋବିନ୍ଦ । କବିଙ୍କ କାବ୍ୟ ମାନସୀ ରାଧା କେବଳ ସୌନ୍ଦର୍ଯ୍ୟର ଲାବଣ୍ୟମୟୀ ମୂର୍ତ୍ତି ନୁହନ୍ତି, ସେ ମଧ୍ୟ ପ୍ରେମର ଜୀବନ୍ତ ବିଗ୍ରହ । ସେ ଅଭିମାନିନୀ । ଗୋପୀମାନଙ୍କ ସହ ରାସଲୀଳାରେ ମଜ୍ଜି ଯାଇଥିବା ଶ୍ରୀକୃଷ୍ଣଙ୍କ ପ୍ରତି ତାଙ୍କର ଅଭିମାନ ସୁସ୍ପଷ୍ଟ । ସଖୀ ସହିତ ନିଜ କୁଞ୍ଜକୁ ଫେରି ଆସିଛନ୍ତି ରାଧା । ରାଧାଙ୍କ ଅଭିମାନକୁ ବୁଝି ପାରିଛନ୍ତି ଶ୍ରୀକୃଷ୍ଣ । ପ୍ରିୟତମାଙ୍କୁ ଅନ୍ୱେଷଣ କରି ସେ ଚିନ୍ତିତ ହୋଇ ପଡ଼ିଛନ୍ତି :

"ମାମିୟଂ ଚଳିତା ବିଲୋକ୍ୟ ବୃତଂ ବଧୂ ନିଚୟେନ
ସାପରାଧତୟା ମୟାପି ନବାରିତାତି ଭୟେନ
ହରିହରି ହତାଦର ତୟାଗତ ସା କୁପିତେନ ।"

ସଖୀ ରାଧା–କୃଷ୍ଣଙ୍କର ମିଳନ ପାଇଁ କୁଞ୍ଜରେ ପହଞ୍ଚି ଅନୁନୟ କରିଛି । ଶ୍ରୀକୃଷ୍ଣ ରାଧାଙ୍କୁ କୁଞ୍ଜକୁ ଆଣିବା ଲାଗି ସଖୀଙ୍କୁ ଅନୁରୋଧ କରିଛନ୍ତି । ରାଧାଙ୍କ ଆଗରେ ସଖୀ ଶ୍ରୀକୃଷ୍ଣଙ୍କ ବିରହ ବର୍ଣ୍ଣନା କରିଛି ଓ ଯମୁନା କୂଳର କୁଞ୍ଜକୁ ଯିବାଲାଗି ଅନୁନୟ କରିଛି ।

"ରତି ସୁଖ ସାରେ ଗତମଭିସାରେ ମଦନ ମନୋହର ବେଶମ୍
ନିକୁରୁ ନିତମ୍ବିନୀ ଗମନ ବିଳମ୍ବନ ମନୁସରତଂ ହୃଦୟେଶମ୍
× × × ×
ଧୀର ସମୀରେ ଯମୁନା ତୀରେ ବସତି ବନେ ବନମାଳୀ ।"

ସଖୀର ସକଳ ଚେଷ୍ଟା ବ୍ୟର୍ଥ ହୋଇଛି । ରାଧା ଶ୍ରୀକୃଷ୍ଣଙ୍କ କୁଞ୍ଜକୁ ଯିବାଲାଗି ମନାକରି ଦେଇଛନ୍ତି । ତେଣୁ ଶ୍ରୀକୃଷ୍ଣ ରାଧାଙ୍କ କୁଞ୍ଜକୁ ଯିବା ପାଇଁ ଇଚ୍ଛା ପ୍ରକାଶ କରିଛନ୍ତି । ହେଲେ କାଳ ବିଳମ୍ବ ଘଟିବାରୁ ରାଧାଙ୍କ ମନରେ ବହୁ ଦୁଶ୍ଚିନ୍ତା ଜାଗ୍ରତ ହୋଇଛି । ଶ୍ରୀକୃଷ୍ଣ ରାଧାଙ୍କ କୁଞ୍ଜକୁ ଯିବା ପରିବର୍ତ୍ତେ ଅନ୍ୟ ଏକ ପ୍ରଣୟିନୀର କୁଞ୍ଜରେ ରାତ୍ରୀ ଅତିବାହିତ କରିଛନ୍ତି ଓ ପ୍ରଭାତ କାଳରେ ରାଧା କୁଞ୍ଜରେ ପ୍ରବେଶ କରିଛନ୍ତି । ଶ୍ରୀକୃଷ୍ଣଙ୍କ ଅଙ୍ଗରେ ସୁରତ ସଙ୍କେତ ଦେଖି ରାଧା ପ୍ରାଣପ୍ରିୟଙ୍କୁ ଭର୍ତ୍ସନା କରିଛନ୍ତି । କୌଣସି ଯୁକ୍ତିଯୁକ୍ତ ଶୁଣିବା ପାଇଁ ସେ ଅସ୍ୱୀକାର କରିଛନ୍ତି । ରାଧାଙ୍କଦ୍ୱାରୁ ଅପମାନ ପାଇ ଶ୍ରୀକୃଷ୍ଣ ଫେରି ଯାଇଛନ୍ତି । ତାଙ୍କର ମାନଭଞ୍ଜନ ପାଇଁ ଶ୍ରୀକୃଷ୍ଣ ସନ୍ଧ୍ୟା ସମୟରେ ରାଧାଙ୍କ କୁଞ୍ଜକୁ ଆସିଛନ୍ତି । ହେଲେ ଶ୍ରୀକୃଷ୍ଣଙ୍କ ସକଳ ଚେଷ୍ଟା ବିଫଳ ହୋଇଛି । ମାନିନୀର ମାନ ଭାଙ୍ଗି ନାହିଁ । ତେଣୁ ପ୍ରାଣପ୍ରିୟାଙ୍କ ପଦପଲ୍ଲବରେ ଲୋଟିଯାଇ ଶ୍ରୀକୃଷ୍ଣ ଭିକ୍ଷା କରିଛନ୍ତି :

"ସ୍ମର ଗରଳ ଖଣ୍ଡନ ମମ ଶିରସି ମଣ୍ଡନଂ
ଦେହି ପଦ ପଲ୍ଲବ ମୁଦାରମ୍ ।"

ରାଧାଙ୍କ ମାନଭଞ୍ଜନ ହୋଇଛି । ସଖୀ ରାଧାଙ୍କୁ ବେଶଭୂଷାରେ ସଜାଇ ଦେଇ ମାଧବଙ୍କ କୁଞ୍ଜରେ ପ୍ରବେଶ କରାଇଛି । ଶ୍ରୀକୃଷ୍ଣ ରାଧାଙ୍କୁ କୁଞ୍ଜ କୁଟୀରକୁ ପାଛୋଟି ନେଇଛନ୍ତି । ରାଧା କୃଷ୍ଣଙ୍କର ମିଳନ ହୋଇଛି । ଏହାହିଁ ସଂକ୍ଷେପରେ ଗୀତଗୋବିନ୍ଦର ବିଷୟବସ୍ତୁ ।

ଯଥାର୍ଥରେ ଜୟଦେବଙ୍କ ଗୀତଗୋବିନ୍ଦ ହିଁ ଗୋବିନ୍ଦଙ୍କ ଲୀଳାର ଗୀତ । ଏହି ଗୀତର ଭାବବସ୍ତୁ ହେଲେ ରାଧା । ଅଧ୍ୟାତ୍ମ ତତ୍ତ୍ୱଦର୍ଶୀ ପଣ୍ଡିତମାନେ ରାଧାକୃଷ୍ଣଙ୍କର ମିଳନକୁ ଜୀବାତ୍ମା ଓ ପରମାତ୍ମାଙ୍କ ମିଳନ ରୂପେ ଗ୍ରହଣ କରନ୍ତି । ଏକର ଅଭାବରେ ଅନ୍ୟଟି ଅପୂର୍ଣ୍ଣ । ପ୍ରକୃତି ଓ ପୁରୁଷ ପରସ୍ପରର ପରିପୂରକ । ପ୍ରେମର ବିଶୁଦ୍ଧତା ପୂର୍ଣ୍ଣ ଆତ୍ମ ସମର୍ପଣରେ ନିହିତ । ରାଧାଙ୍କ ଅଭାବରେ ଭାରତୀୟ କାବ୍ୟ ମନ୍ଦିରରେ ପ୍ରେମର ପୂଜାବେଦୀ ହୁଏତ ଶୂନ୍ୟ ହୋଇ ରହିଥାନ୍ତା । ସେହି ରାଧା ଓ କୃଷ୍ଣଙ୍କୁ ପୁରୁଷ ଓ ପ୍ରକୃତିକୁ ଉପଜୀବ୍ୟ କରି 'ଗୀତଗୋବିନ୍ଦ' କାବ୍ୟଟି ରଚିତ । କାନ୍ତ କୋମଳ ପଦାବଳୀରେ ସମୃଦ୍ଧ ଏହି କାବ୍ୟଟି ଯୁଗ ଯୁଗ ଧରି ପ୍ରେମିକ କବିକୁଳ ପାଇଁ ଅପାର୍ଥିବ ପ୍ରେମ ସାଧନାର ନିର୍ଦ୍ଦେଶନା ଦେଇ ଆସୁଥିବ ଓ ତାହାର ସ୍ରଷ୍ଟା ଜୟଦେବ ମଧ୍ୟ ଏଥିପାଇଁ ଅମରକୀର୍ତ୍ତୀ ପାଇଁ କାଳ କାଳ ଧରି ବାଣୀ ଜଗତରେ ସ୍ୱତନ୍ତ୍ର ସମ୍ମାନ ଦାବୀ କରି ଆସୁଥିବେ ।

ଗ୍ରାମ–ବହଳପଡ଼ା,
ପୋ: ଅ:–ବେଙ୍କହାର, ଜିଲ୍ଲା–କଟକ ।

# ଶ୍ରୀଜୟଦେବ ବିରଚିତ
# ଖଣ୍ଡିତା ନାୟିକା ରାଧାଙ୍କର ଉକ୍ତି

ପ୍ରଭାକର ନାୟକ

[ରଜନୀ ଜନିତ ଗୁରୁ ଜାଗରରାଗ କଷାୟିତମଳ ସନିମେଷମ୍
ବହସି ନୟନ ମନୁରାଗମିବ ସ୍ଫୁଟ ମୁଦିତରସାଭି ନିବେଶମ୍
ହରି ହରି ଯାହି ମାଧବ ଯାହି କେଶବ ମାବଦ କୈତବବାଦମ୍
ତାମନୁସର ସରସୀରୁହଲୋଚନ ଯାତବ ହରତି ବିଷାଦମ୍ (ଧ୍ରୁବପଦମ୍)]

ରାତ୍ରି ଜାଗରଣ କାରଣୁ ନୟନେ ଭରିଛି ଲୋହିତ ରଙ୍ଗ
ଯେଉଁ ବକ୍ଷେ ତବ ପୂରି ରହିଅଛି ଶୃଙ୍ଗାରର ଅନୁରାଗ ହେ
ଯାଅ ଯାଅ ହେ କେଶବ ଯାଅ
ଛଳ ପ୍ରଶଂସା ଆଉ ନ କହ
ଅନୁସର ସେହି ନାୟିକା ସଂଗତି ଯେ ହରିବ ତୁମ କୋହ ହେ (ଘୋଷା)

[କଜ୍ଜଳ ମଳିନ ବିଲୋଚନ ଚୁମ୍ବନ ବିରଚିତ ନୀଳିମ ରୂପମ୍
ଦଶନବସନ ମରୁଣଂ ତବ କୃଷ୍ଣ ତନୋତି ତନୋରନୁ ରୂପମ୍
ହରି ହରି ଯାହି ମାଧବ........]

କଜ୍ଜଳ ମଳିନ ନୟନେ ଚୁମ୍ବନ କାରଣୁ ଅଧର ନୀଳ
ଅଧର ଲାଲିମା ନୀଳ ହେତୁ ତବ ତନୁ ଅନୁରୂପ ତା'ର ହେ
ଯାଅ ଯାଅ ହେ କେଶବ ଯାଅ

[ବପୁରନୁ ହରତି ତବସ୍ମର ସଂଗର ଖର ନଖର କ୍ଷତ ରେଖମ୍
ମରକତ ଶକଳ କଳିତ କଳଧୌତ ଲିପିମିବ ରତିଜୟ ଲେଖମ୍
ହରି ହରି ଯାହି ମାଧବ........]

ତୀକ୍ଷ୍ଣ ନଖକ୍ଷତ ଶରୀରେ ଶୋଭିତ କନ୍ଦର୍ପ କେଳି ସମରେ
ରତିଜୟପତ୍ର ମର୍କତେ ଲିଖିତ କିବା ସୁବର୍ଣ୍ଣ ଅକ୍ଷରେ ହେ
ଯାଅ ଯାଅ ହେ କେଶବ ଯାଅ........

[ଚରଣ କମଳଗଳଦଲକ୍ତ କସିକ୍ତ ମିଦଂ ତବ ହୃଦୟ ମୁଦାରମ୍
ଦର୍ଶୟତୀବ ବହିର୍ମଦନଦ୍ରୁମ ନବ କିଶଳୟ ପରିବାରମ୍
ହରି ହରି ଯାହି ମାଧବ........]

ତବ ବକ୍ଷେ ଲେଖା ଚିହ୍ନ ଯେ ନାୟିକା ପାଦପଦ୍ମ ଅଳତାରେ
ମଦନ ବୃକ୍ଷର ପଲ୍ଲବ ପରାୟ ଶୋଭେ ଅନୁସର ତାରେ ହେ
ଯାଅ ଯାଅ ହେ କେଶବ ଯାଅ........

[ଦଶନ ପଦଂ ଭବଦଧରଗତଂ ମମ ଜନୟତି ଚେତସି ଖେଦମ୍
କଥୟତି କଥ ମଧୁନାପି ମୟାସହ ତବ ବପୁରେତଦ ଭେଦମ୍
ହରି ହରି ଯାହି ମାଧବ........]

ଓଷ୍ଠେ ତବ ଆନ ନାୟିକା ଦଶନ–ଚିହ୍ନ ଦେଖି ଜାଗେ ଖେଦ
କିପରି କହିବି ମମସାଥେ ତବ ପ୍ରଣୟ ଅଛି ଅଭେଦ ହେ
ଯାଅ ଯାଅ ହେ କେଶବ ଯାଅ........

[ବପୁରିବ ମଳିନତରଂ ତବ କୃଷ୍ଣ ମନୋଽପି ଭବିଷ୍ୟତି ନୂନମ୍
କଥମଥ ବଞ୍ଚୟସେ ଜନ ମନୁଗତ ମସମଶର ଜ୍ୱର ଦୂନମ୍
ହରି ହରି ଯାହି ମାଧବ.........]

ତନୁକଳାରଙ୍ଗ ପରି ମନ ତବ ହୋଇ ନଥିଲେ ମଳିନ
ତୁମ ଅନୁଗତା କାମ ପୀଡ଼ିତାରେ କରନ୍ତ କି ପ୍ରତାରଣ ହେ
ଯାଅ ଯାଅ ହେ କେଶବ ଯାଅ.........

[ଭ୍ରମତି ଭବାନବଳା କବଳାୟ ବନେଷୁ କିମତ୍ର ବିଚିତ୍ରମ୍
ପ୍ରଥୟତି ପୂତନିକୈବ ବଧୂବଧ ନିର୍ଦ୍ଦୟ ବାଳ ଚରିତ୍ରମ୍
ହରି ହରି ଯାହି ମାଧବ.........]

ଭ୍ରମୁଛ ବନରେ ଅବଳାଜନରେ କରିବ ବୋଲି ବିନାଶ
ଏ ନୁହେଁ ବିଚିତ୍ର ବାଳକାଳେ ଯେଣୁ ପୂତନା କରିଛ ନାଶ ହେ
ଯାଅ ଯାଅ ହେ କେଶବ ଯାଅ.........

[ଶ୍ରୀ ଜୟଦେବ ଭଣିତ ରତି ବଞ୍ଚିତ ଖଣ୍ଡିତ ଯୁବତିବିଳାପମ୍
ଶୃଣୁତ ସୁଧା ମଧୁରଂ ବିବୁଧା ବିବୁଧାଳୟ ତୋଽପି ଦୁରାପମ୍]

ସୁରତି ବଞ୍ଚିତା ନାୟିକା ଖଣ୍ଡିତା–ବିଳାପ ଶୁଣ ବିବୁଧେ
ସରଗ ଦୁର୍ଲଭ ସୁଧାସମ ଗୀତି କବିଜୟଦେବ ଗଦେ ହେ ।

---

ସମ୍ପାଦକ, ଅଭିନନ୍ଦନ ଛବି,
ଫୁଲବାଣୀ–୭୬୨୦୦୧ ।



ପୁରୀ ଜିଲ୍ଲା ଚନ୍ଦନପୁର ନିକଟସ୍ଥ ରଘୁରାଜପୁରଠାରେ ବସନ୍ତ ଉତ୍ସବ ପାଳନ ଅବସରରେ
ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ

# ସ୍ୱାଭିମାନୀ
# କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ

ପଦ୍ମଚରଣ ସାହୁ

ଓଡ଼ିଶାର ସାଂସ୍କୃତିକ ଧାରାରେ କବି ଉପେନ୍ଦ୍ର ଭଞ୍ଜ ଏକ କାଳଜୟୀ ପ୍ରତିଭା । ତାଙ୍କର ଅପ୍ରତିଦ୍ୱନ୍ଦ୍ୱୀ ସୃଷ୍ଟି ସମ୍ଭାର ଏ ଜାତିର ସଂସ୍କୃତି ସୁରକ୍ଷାରେ ଅଦ୍ୱିତୀୟ ଭୂମିକା ଗ୍ରହଣ କରି ଆସିଛି । ବହୁ ଖ୍ୟାତନାମା ଗବେଷକ ମତପୋଷଣ କରିଛନ୍ତି ଯେ, ଉପେନ୍ଦ୍ର ଭଞ୍ଜ ଓଡ଼ିଆରେ ରଚନା ନକରି ଯଦି ତାଙ୍କର କୃତି ସମୂହକୁ ସଂସ୍କୃତ ଭାଷାରେ ପରିପ୍ରକାଶ କରିଥାଆନ୍ତେ, ତେବେ ସେ କେବଳ ଭାରତ ନୁହେଁ, ସମଗ୍ର ବିଶ୍ୱର ସାରସ୍ୱତ ଜଗତରେ ସୁଉଚ୍ଚ ଆସନର ଅଧିକାରୀ ହୋଇ ପାରିଥାଆନ୍ତେ । କିନ୍ତୁ ସ୍ୱାଭିମାନୀ ଉପେନ୍ଦ୍ର ଭଞ୍ଜ ତାହା କରି ନଥିଲେ । ସେ ଥିଲେ ସଂସ୍କୃତ ଭାଷା ସାହିତ୍ୟର ଜଣେ ଅଗାଧ ଜ୍ଞାନୀ । ତାଙ୍କର ଜୀବନକାଳ ସପ୍ତଦଶ ଶତାବ୍ଦୀ ଶେଷ ଓ ଅଷ୍ଟାଦଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ସଂସ୍କୃତ ପଣ୍ଡିତମାନେ ଯେଉଁଳି ପ୍ରଚଣ୍ଡ ପ୍ରତିଭାର ଅଧିକାରୀ ବୋଲାଇ – ଦେବଭାଷା(?) ସଂସ୍କୃତ ବ୍ୟତୀତ ଅନ୍ୟ କୌଣସି ଭାଷାକୁ ସ୍ୱୀକାର କରୁନଥିଲେ ତାହା ସାହିତ୍ୟ ଇତିହାସରେ ସୁସ୍ପଷ୍ଟ ଓଡ଼ିଆରେ ରଚିତ ଜଗନ୍ନାଥ ଦାସଙ୍କ ଭାଗବତକୁ ସେମାନେ ତେଲି ଭାଗବତ କହି ଉପହାସ କରୁଥିଲେ । ସେହିମାନଙ୍କ ଭୟରେ ସାରଳା ଦାସ ଓଡ଼ିଆରେ ରଚିତ ନିଜର ମହାଭାରତକୁ କେବଳ ଦେବୀ ସାରଳାଙ୍କ ସ୍ୱମୁଖ ନିଃସୃତ କାବ୍ୟ ଭାବେ ପ୍ରତିପାଦନ କରି ନିଜକୁ ସଂସ୍କୃତ ପଣ୍ଡିତଙ୍କ ଅସୂୟାରୁ ମୁକ୍ତ ରଖିବା ପାଇଁ ଚେଷ୍ଟା କରିଥିଲେ । ଏ ପରିପ୍ରେକ୍ଷୀରେ ଉପେନ୍ଦ୍ର ଭଞ୍ଜ ସଂସ୍କୃତ ପଣ୍ଡିତଙ୍କ ଅହମିକାକୁ କୁଠାରାଘାତ କରି ଦେଖାଇ ଦେବାକୁ ଚାହିଁଥିଲେ ଯେ – ଓଡ଼ିଆରେ ବି ସଂସ୍କୃତଠାରୁ ଆହୁରି ଅଧିକ ଉଚ୍ଚକୋଟୀର କାବ୍ୟ ରଚନା କରାଯାଇପାରେ । ଏହା ମାତୃଭାଷା, ମାତୃଭୂମି ପ୍ରତି ପ୍ରଗାଢ଼ ଶ୍ରଦ୍ଧା ବ୍ୟତୀତ ଆଉ କ'ଣ ହୋଇପାରେ ! ସ୍ୱାଭିମାନୀ କବି ଉପେନ୍ଦ୍ର ଭଞ୍ଜ ଓଡ଼ିଆ ଭାଷା ସାହିତ୍ୟର ଯେଉଁ କାବ୍ୟକୋଣାର୍କ ଗଢ଼ି ଯାଇଛନ୍ତି, ତାହା ଏ ଜାତିର ସାଂସ୍କୃତିକ ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ ।

କାବ୍ୟଶିଳ୍ପୀ ଉପେନ୍ଦ୍ର ଯେ କେବଳ ନିଜର ପାଣ୍ଡିତ୍ୟ ପରିପ୍ରକାଶ ତଥା ସଂସ୍କୃତ ପଣ୍ଡିତମାନଙ୍କୁ ମୁକାବିଲା କରିବା ପାଇଁ ବୈଦେହୀଶ ବିଳାସ, ଲାବଣ୍ୟବତୀ, କୋଟୀବ୍ରହ୍ମାଣ୍ଡ ସୁନ୍ଦରୀ, ଅବନା ରସତରଙ୍ଗ, କଳାକଉତୁକ ପ୍ରଭୃତି କ୍ଲିଷ୍ଟ କାବ୍ୟମାନ ରଚନା କରିଛନ୍ତି ତାହା ନୁହେଁ      ସେ ଭାବବତୀ, ରସଲେଖା, ଚଉପଦୀଚନ୍ଦ୍ର, ରସିକ ହାରାବଳୀ, ଷୋଳପୋଇ ପ୍ରଭୃତି ଗୀତିକାବ୍ୟ ଓ କବିତା ରଚନା କରି ନିଜ ଭାଷା ସାହିତ୍ୟର ସାରଲ୍ୟ ତଥା ସାବଲୀଳତା ପ୍ରତିପାଦନ କରିଛନ୍ତି । ତାଙ୍କର ସୃଷ୍ଟି ସମୂହରେ ସବୁ ବର୍ଗର ପାଠକଙ୍କ ପାଇଁ ଉଚ୍ଚ ମାନର ହୃଦୟସ୍ପର୍ଶୀ କୃତି ରହିଅଛି ଏବଂ ଯୁଗ ଯୁଗ ଧରି ଆଦୃତି ଲାଭ କରିଛି ।

ଭଞ୍ଜଙ୍କ ବିପୁଳ ସୃଷ୍ଟିସମ୍ଭାର ମଧ୍ୟରୁ ଏଯାଏଁ ୩୦ରୁ ଊର୍ଦ୍ଧ୍ୱ ଗ୍ରନ୍ଥ ମୁଦ୍ରିତ ହୋଇ ଲୋକଲୋଚନକୁ ଆସିଲାଣି । ଅକ୍ଷର କ୍ରମରେ ସେସବୁ ହେଲା– ଅବନା ରସ ତରଙ୍ଗ, କଳାକଉତୁକ, କୁଞ୍ଜବିହାର, କୋଟୀବ୍ରହ୍ମାଣ୍ଡ ସୁନ୍ଦରୀ, ଗୀତାଭିଧାନ, ଚଉପଦୀ ଚନ୍ଦ୍ର, ଚଉପଦୀ ଭୂଷଣ, ଚଉପଦହରା, ଚନ୍ଦ୍ରଲେଖା, ଚିତ୍ରକାବ୍ୟ, ଛାନ୍ଦଭୂଷଣ, ଦଶପୋଇ, ପଞ୍ଚଶାୟକ, ପ୍ରେମ ସୁଧାନିଧି, ବଢ଼ାର ବୋଲି, ବୈଦେହୀଶ ବିଳାସ, ଭାବବତୀ, ଯମକରାଜ ଚଉତିଶା, ରସପଞ୍ଚକ, ରସପୋଇ, ରସଲେଖା, ରସିକ ହାରାବଳୀ, ରାମଲୀଳାମୃତ, ଲାବଣ୍ୟନିଧି, ଲାବଣ୍ୟବତୀ, ଶୋଭାବତୀ, ଶ୍ରୀନିଳାଦ୍ରୀ ଚଉତିଶା, ଷୋଳପୋଇ, ସୁବର୍ଣ୍ଣରେଖା, ସୁଭଦ୍ରା ପରିଣୟ, ସଙ୍ଗୀତ ଉପେନ୍ଦ୍ର ଭଞ୍ଜ । ଅବନା ରସତରଙ୍ଗ ସମ୍ପୂର୍ଣ୍ଣ ଗ୍ରନ୍ଥଟି ଅବନା ଅକ୍ଷରରେ ରଚିତ ହୋଇଥିବା ସ୍ଥଳେ ବହିର ଶିରୋନାମାରେ ବନାୟୁକ୍ତ 'ଅବନା' ଶବ୍ଦ ଉପେନ୍ଦ୍ର ଭଞ୍ଜ କେବେଁ ରଖି ନଥିବେ । ତାହା 'ରସ ତରଙ୍ଗ' ହିଁ ହୋଇଥିବ ଓ ପରବର୍ତ୍ତୀ ସମୟରେ ଅନ୍ୟାନ୍ୟ କୃତି ବିକୃତି ଭଳି ସେଥିରେ 'ଅବନା' ଶବ୍ଦ ଯୋଡ଼ି ହୋଇ ଯାଇଛି । ସେହିଭଳି 'ଶ୍ରୀନିଳାଦ୍ରୀ ଚଉତିଶା' ଗୌଡ଼ୀୟ ବୈଷ୍ଣବ ଧାରାର ନାମକରଣ ଭଳି ଜଣାଯାଏ । ସ୍ତ୍ରୀ, ପୁରୁଷ ଏପରିକି ପ୍ରତ୍ୟେକ ବସ୍ତୁର ନାମ ଆଗରେ ବୈଷ୍ଣବମାନେ ଶ୍ରୀ ଅକ୍ଷର ଯୋଡୁଥିଲେ । ଉପେନ୍ଦ୍ର ଭଞ୍ଜ ସେହି ଧାରାର ବିପକ୍ଷବାଦୀ ଥିଲେ । ଏଣୁ 'ଶ୍ରୀନିଳାଦ୍ରୀ ଚଉତିଶା'ର ଶ୍ରୀ ଅକ୍ଷର ପରବର୍ତ୍ତୀ ସମୟର ସଂଯୋଜନା ହୋଇଥିବା ଅନୁମାନ କରାଯାଏ ।

ଉପର୍ଯ୍ୟୁକ୍ତ କାବ୍ୟ କବିତା ସମେତ କବି ଉପେନ୍ଦ୍ର ଭଞ୍ଜଙ୍କ ଆହୁରି ଅନେକ ଏପରିକି ଏହାର ସମ ପରିମାଣର କୃତି ବର୍ତ୍ତମାନଯାଏଁ ଦୁଷ୍ପ୍ରାପ୍ୟ ରହିଥିବା ଗବେଷକମାନେ ମତ ପ୍ରକାଶ କରନ୍ତି । ଏଯାଏଁ ପ୍ରକାଶିତ ଗ୍ରନ୍ଥଗୁଡ଼ିକୁ ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ସ୍ଥାନରୁ ଯେଉଁମାନେ ସଂଗ୍ରହ କରିଛନ୍ତି ଓ ଯେଉଁମାନେ ଅନାବିଷ୍କୃତ ଗ୍ରନ୍ଥ ସମ୍ପର୍କରେ ସୂଚନା ଦେଇଛନ୍ତି । ସେମାନେ ହେଲେ– ରଙ୍ଗଲାଲ ବନ୍ଦୋପାଧ୍ୟାୟ, ବୀମସ୍ ସାହେବ, ମନମୋହନ ଚକ୍ରବର୍ତ୍ତୀ, ମଧୁସୂଦନ ଦାସ, ହଣ୍ଟର ସାହେବ, ତାରିଣୀ ଚରଣ ରଥ, ଜଗବନ୍ଧୁ ସିଂହ, ଗୋପାଳ ଚନ୍ଦ୍ର ପ୍ରହରାଜ, ଭାଗୀରଥି ମହାପାତ୍ର, ହରେକୃଷ୍ଣ ମହତାବ, ବିଛନ୍ଦ ଚରଣ ପଟ୍ଟନାୟକ, ରାମକୃଷ୍ଣ ନନ୍ଦ, ଅନନ୍ତ ପଦ୍ମନାଭ ପଟ୍ଟନାୟକ, ଗୌରୀ କୁମାର ବ୍ରହ୍ମା, ଜୟକୃଷ୍ଣ ମିଶ୍ର ଓ ମାଗୁଣି ଦାସ ପ୍ରମୁଖ । ଅପ୍ରକାଶିତ ଗ୍ରନ୍ଥଗୁଡ଼ିକ ହୋଇପାରେ– ଧ୍ୱନି ମଞ୍ଜରୀ, ରସ ମଞ୍ଜରୀ, ଶବ୍ଦମାଳା, କାମକୌତୁକ, ନଅପୋଇ, କଳାକଣ୍ଠିକ.., କଳାବତୀ, ଚନ୍ଦ୍ରକଳା, ବଇତିଶା, ସଙ୍ଗୀତ କୌମୁଦୀ, କଟପାୟା, ବାର ପୋଇ, କେଳିବାହୁଡ଼ା, ବାରମାସୀ,

ଦୁର୍ଗାସ୍ତୁତି, ଗଜ ନିସ୍ତାରଣ, ଗରୁଡ଼ ଗୀତା, ଛତିଶରାଗ, ବିଚିତ୍ର ରଙ୍ଗିଣୀ, ମଦନ ମଞ୍ଜରୀ, ତ୍ରିପୁରା ସୁନ୍ଦରୀ, ଅନଙ୍ଗରେଖା, କଞ୍ଚିତ କନ୍ଦରେଖା, ରସନିଧି, ମିଳନ ମଞ୍ଜରୀ, ଛତିଶ ଗାପ, ନାରଦ ପୁରାଣ, ରସିକାନୁଚିନ୍ତା, ସଙ୍ଗୀତ ବିଳାସ, ମହାନାଟକ, ଭଗଵମାଳି, ଚଉତିଶା ଚନ୍ଦ୍ର ପ୍ରଭୃତି । ଏସବୁ ଆବିଷ୍କୃତ ଓ ମୁଦ୍ରିତ ହେଲେ ଓଡ଼ିଆ ସାରସ୍ୱତ ଭଣ୍ଡାର ଆହୁରି ଅନେକ ଅମୂଲ୍ୟ ରତ୍ନରେ ସମୃଦ୍ଧ ହେବ ।

କବି ଉପେନ୍ଦ୍ର ଭଞ୍ଜଙ୍କ ଜୀବନ ବୃତ୍ତାନ୍ତ ଏଯାଏଁ ସଠିକ୍ ଭାବେ ନିରୂପିତ ହୋଇ ପାରିନାହିଁ । କେତେକ ଗବେଷକ ଭଞ୍ଜଙ୍କ ଜୀବନକାଳ ଖ୍ରୀ: ୧୬୮୫ରୁ ୧୭୨୫ ମାତ୍ର ୪୦ ବର୍ଷ ବୋଲି କହିଥିବା ସ୍ଥଳେ ବର୍ତ୍ତମାନ ଶ୍ରୀ ସଚ୍ଚିଦାନନ୍ଦ ମିଶ୍ର ପ୍ରାମାଣିକ ତଥ୍ୟ ସହ ଉପସ୍ଥାପନ କରିଛନ୍ତି– କବି ଉପେନ୍ଦ୍ର ଭଞ୍ଜ ଘୁମୁସର ରାଜବଂଶରେ ଖ୍ରୀ: ୧୬୭୦ରେ ଜନ୍ମଗ୍ରହଣ କରିଥିଲେ ଏବଂ ୧୭୨୫ ପରେ ବହୁ ବର୍ଷ ବଞ୍ଚିଥିଲେ । ତାଙ୍କର ଅନ୍ୟତମ ଶ୍ରେଷ୍ଠ କାବ୍ୟ "ଲାବଣ୍ୟବତୀ' ୧୭୩୧ରେ ରଚିତ, ସେ ୧୭୩୫ରେ ମହାରାଜ ଉପାଧି ପାଇଥିଲେ ଏବଂ ୧୭୪୦ ଯାଏଁ ଲେଖନୀ ଚାଳନା କରିଥିବା ଶ୍ରୀ ମିଶ୍ର ନିରୂପିତ କରିଛନ୍ତି । ଖ୍ରୀ: ୧୭୬୩ ବେଳକୁ ଉପେନ୍ଦ୍ର ଭଞ୍ଜ ଜୀବିତ ଥିବା ସୂଚନା ମଧ୍ୟ ମିଳିଲାଣି । ସେହିବର୍ଷ ଓଡ଼ଗାଁ ରଘୁନାଥ ମନ୍ଦିର ପ୍ରତିଷ୍ଠା ହୋଇଥିଲା ଏବଂ ପ୍ରତିଷ୍ଠାତାଙ୍କ ସହିତ ସେ ମନ୍ଦିର ପରିସରରେ ସାକ୍ଷାତ କରିଥିବା ସୂଚନା ମିଳିଛି । ତେଣୁ ଭଞ୍ଜ କବି ୧୭୪୦ରୁ ଦୀର୍ଘ ୨୩ ବର୍ଷ ନୀରବ ନରହି ଅନେକ ଗ୍ରନ୍ଥ ଲେଖିଥିବା ଅନୁମିତ ହୁଏ । ଜୀବନ କାଳ ମଧ୍ୟରେ ସେ ଅନେକ ଦୁଃଖ କଷ୍ଟ ଭୋଗ କରିଛନ୍ତି । ବାଲ୍ୟକାଳରୁ ରାଜ୍ୟହରା, ଯୌବନରେ ପିତା, ମାତା ଓ ପତ୍ନୀ ବିୟୋଗ ଏବଂ ଅନ୍ୟର ଆଶ୍ରୟପ୍ରାର୍ଥୀ ହୋଇ ବହୁ ବର୍ଷ ବିତାଇଥିବା ଯୋଗୁଁ ସେ କେବଳ ଯେ ଦୁଃଖ ଭୋଗ କରିଛନ୍ତି ତାହା ନୁହେଁ, ଅଭାବଗ୍ରସ୍ତ ହୋଇ ନିଜ ରଚିତ କେତେକ କାବ୍ୟ କବିତା ମଧ୍ୟ ଅନ୍ୟ ନାମରେ ଭଣିତା କରି ଅର୍ଥ ବିନିମୟରେ ବିକ୍ରି କରି ଦେଇଥିବା ନିଜେ ସୂଚନା ଦେଇଛନ୍ତି ।

ତ୍ରୈଲୋକ୍ୟ ମୋହିନୀ ଆଦି ଯେ ଗୀତ,
ନିମିତ ଛାନ୍ଦ ପୋଥି ପାଞ୍ଚ ସାତ ।
ଯେ ଅର୍ଥ ପାଇବ ମାଗେଣ ପୁଣ,
ହୋଇଛି ତେଣୁ କରି ବିତରଣ ।

ଭଞ୍ଜଙ୍କ ନାମରେ ପ୍ରଚଳିତ ଅନେକ କିମ୍ବଦନ୍ତୀ ମିଥ୍ୟା ପ୍ରମାଣିତ ହେଲାଣି । ଓଡ଼ଗାଁ ରଘୁନାଥଙ୍କ ପୀଠରେ ସେ ଶରଣାପନ୍ନ ହୋଇ ରାମତାରକ ମନ୍ତ୍ର ସିଦ୍ଧି କରିଥିବା ପ୍ରସିଦ୍ଧ କିମ୍ବଦନ୍ତୀ ଅମୂଳକ ବୋଲି ଜଣା ପଡ଼ିଲାଣି, କାରଣ ରଘୁନାଥ ମୂର୍ତ୍ତି ସ୍ଥାପନ ସମୟ ଖ୍ରୀ: ୧୭୬୩ ହୋଇଥିବା ଯୋଗୁଁ ସେତେବେଳକୁ ଉପେନ୍ଦ୍ର ଭଞ୍ଜ ବଞ୍ଚିଥିଲେ, ତାଙ୍କର ବୟସ ୭୦ ବର୍ଷ ହୋଇଥିବ ଏବଂ ଲେଖନୀ ପ୍ରାୟତଃ ନୀରବ ହୋଇ ସାରିଥିବ । ତେଣୁ ଯେଉଁ ରଘୁନାଥଙ୍କ ପାଖରେ ଉପେନ୍ଦ୍ର ଭଞ୍ଜଙ୍କ ମନ୍ତ୍ର ସିଦ୍ଧ ହୋଇଥିଲା ତାହା ତାଙ୍କର ମାମୁଁ ଘର ମାଳିବାଡ଼ି ନିକଟସ୍ଥ ଡେଙ୍କଡ଼ା ଗ୍ରାମର ରଘୁନାଥ ମନ୍ଦିର ହୋଇଥିବା ଅନୁମାନ କରାଯାଏ । ସେହିଭଳି ଶୀକାର, ପତ୍ନୀଙ୍କ ଆତ୍ମହତ୍ୟା, ଦ୍ୱିତୀୟ ବିବାହ ଆଦି ବହୁ କିମ୍ବଦନ୍ତୀ ଭିନ୍ନ ଓ କେତେକ ସ୍ଥଳେ ମିଥ୍ୟା ପ୍ରମାଣିତ ହେଲାଣି । ଏହି ଜାତୀୟ କବି ଉପେନ୍ଦ୍ର ଭଞ୍ଜଙ୍କର ଜୀବନବୃତ୍ତାନ୍ତ ସଠିକ୍ ଭାବେ ଏଯାଏଁ ନିରୂପିତ ଓ ପ୍ରକାଶିତ ହୋଇ ନପାରିବା ଅତ୍ୟନ୍ତ ପରିତାପର ବିଷୟ ।

ଭଞ୍ଜ ସାହିତ୍ୟରେ ଅଶ୍ଳୀଳତା ଏକ ବହୁ ଚର୍ଚ୍ଚିତ ଅଧ୍ୟାୟ । କିନ୍ତୁ ସେ ସମୟ ପାଇଁ ଶୃଙ୍ଗାର ସାହିତ୍ୟର ସୃଷ୍ଟିଥିଲା ଅପରିହାର୍ଯ୍ୟ । ତତ୍‌କାଳୀନ ବହୁ କବି ଏହି ଶୃଙ୍ଗାର ରସକୁ ନିଜ ସୃଷ୍ଟିରେ ପ୍ରାଧାନ୍ୟ ଦେଇଥିଲେ । ଏଣୁ ତାହା ଥିଲା ରୀତି ଯୁଗ ଏବଂ ସେ ଯୁଗର ପ୍ରଥମ ସ୍ରଷ୍ଟା ଥିଲେ ଉପେନ୍ଦ୍ରଙ୍କ ପିତାମହ ଧନଞ୍ଜୟ ଭଞ୍ଜ । ସେହି ରୀତି ଯୁଗୀୟ ସୃଷ୍ଟିସମ୍ଭାର ତତ୍‌କାଳୀନ ଓଡ଼ିଶାର ସାଂସ୍କୃତିକ ଓ ସାମାଜିକ ଜୀବନ ପାଇଁ ଥିଲା ମୃତସଞ୍ଜିବନୀ – ମହୌଷଧି ।

ଷୋଡ଼ଶ ଶତାବ୍ଦୀ ପ୍ରାରମ୍ଭରେ ଚୈତନ୍ୟଦେବ ବଙ୍ଗ ପ୍ରଦେଶ ନଦୀୟା ନବଦ୍ୱୀପରୁ ଆସି ଓଡ଼ିଶାରେ ପହଞ୍ଚିଲେ । ଖୋଳ କରତାଳର ମଧୁର ମୂର୍ଚ୍ଛନା ସହିତ ନିତାଇ ଗୌର ରାଧେଶ୍ୟାମ ସଙ୍ଗୀତ ମାଧ୍ୟମରେ ଲୋକଙ୍କୁ ଆକୃଷ୍ଟ କରାଇ ବୈଷ୍ଣବ ଧର୍ମରେ ଦୀକ୍ଷିତ କରାଇଲେ । ଏହି ଧର୍ମର ଧାରା ଅନୁଯାୟୀ ସ୍ତ୍ରୀ ପୁରୁଷ ନିର୍ବିଶେଷରେ ସମସ୍ତେ ନିଜ ମନରେ ରାଧା ଭାବ ଜାଗ୍ରତ କରି ଶ୍ରୀକୃଷ୍ଣଙ୍କୁ ପ୍ରେମ ଓ ଭକ୍ତି କରିବାକୁ ନିର୍ଦ୍ଦେଶ ଦିଆଗଲା । ଓଡ଼ିଶାର ସମର ସଂସ୍କୃତି ରୂପାନ୍ତରିତ ହେଲା ରାଧା ସଂସ୍କୃତିକୁ । ଗାଁ ଗାଁର କୁସ୍ତି କସରତ ଆଖଡ଼ା ଘର ସବୁ କୀର୍ତ୍ତନ ମଣ୍ଡଳୀ କାର୍ଯ୍ୟାଳୟରେ ପରିଣତ ହେଲା, ଲୋକେ ଖଣ୍ଡା ତଲୱାର ଫିଙ୍ଗି ଦେଇ ଖୋଳ କରତାଳ ଧରିଲେ । ପୁରୁଷ ମନର ରାଧା ଭାବ ଗୋଟାଏ ବୀରପୁଙ୍ଗବ ଜାତିକୁ ନଂପୁଂସକ କରିଦେବାକୁ ବସିଲା । ତେଣୁ ଏ ଜାତିର ପୌରୁଷ ଜାଗ୍ରତି ପାଇଁ ରୀତି ଯୁଗର ସୃଷ୍ଟି ଏବଂ ଉପେନ୍ଦ୍ର ଭଞ୍ଜ ସେହି ଯୁଗର ସର୍ବ ଶ୍ରେଷ୍ଠ କବି ।

ଊନବିଂଶ ଶତାବ୍ଦୀ ଶେଷ ଓ ବିଂଶ ଶତାବ୍ଦୀ ପ୍ରାରମ୍ଭରେ ଭଞ୍ଜ ସାହିତ୍ୟକୁ ଦୁର୍ବୋଧ ଆଖ୍ୟା ଦେଇ ଅନେକ ବାଦ ବିସମ୍ବାଦ ସଙ୍ଗଠିତ ହୋଇଛି । ଏହା ଅନ୍ୟ କିଛି ନୁହେଁ-- ପାଠକମାନଙ୍କ ଅଧ୍ୟବସାୟର ଅଭାବ ମାତ୍ର । ଯେଉଁ ସମୟରେ 'ଅମର ପୁରାଣ ନିତୋଇ ଘୋଷ' ଉପଦେଶ ଶିକ୍ଷାର୍ଥୀମାନଙ୍କୁ ଦିଆଯାଉଥିଲା ଏବଂ ଅମରକୋଷ ଓ ମୁଗ୍ଧବୋଧ ବ୍ୟାକରଣ ଭଳି କଠିନ ପାଠ ପ୍ରାଥମିକ ଶିକ୍ଷା ପ୍ରତିପାଦିତ ହୋଇଥିଲା, ସେ ସମୟରେ ଶିକ୍ଷାର ମାନ ବହୁ ଉଚ୍ଚରେ ରହିଥିଲା– ଏହା ନିଃସନ୍ଦେହ । ପରବର୍ତ୍ତୀ ସମୟର ପରିଶ୍ରମ କାତର, ଅଧ୍ୟୟନ କାର୍ପଣ୍ୟ ସମାଜରେ ଉପେନ୍ଦ୍ର ଭଞ୍ଜଙ୍କ କ୍ଲିଷ୍ଟ କାବ୍ୟ ଦୁର୍ବୋଧ ମନେହେବା ବୈଚିତ୍ର୍ୟ କିଛି ନାହିଁ । ସ୍ତ୍ରୀ ବିଦ୍ୱେଷ ପାଠକ, ନିଷ୍ଠାପର ଗବେଷକ ସେହି ଦୁର୍ବୋଧ ସାହିତ୍ୟକୁ ନେଇ ଅନେକ ଅର୍ଥ–ଅର୍ଥାନ୍ତର ଓ ଗବେଷଣାରେ ବହୁ ସଫଳତା ହାସଲ କରିଛନ୍ତି । ଭଞ୍ଜ ସାହିତ୍ୟକୁ ନେଇ ଯେତିକି ଗ୍ରନ୍ଥ ସମାଲୋଚନା ଗ୍ରନ୍ଥ ପ୍ରକାଶ ପାଇଛି ସେତିକି ଅନ୍ୟ କୌଣସି କବିଙ୍କ କୃତି ପାଇଁ ସମ୍ଭବ ହୋଇ ନାହିଁ ।

ଉପେନ୍ଦ୍ର ଭଞ୍ଜଙ୍କୁ ବିଂଶ ଶତାବ୍ଦୀ ପ୍ରାରମ୍ଭରେ ଐତିହାସିକ ଜଗବନ୍ଧୁ ସିଂହ, ତାଙ୍କର 'ପ୍ରାଚୀନ ଉତ୍କଳ' ଗ୍ରନ୍ଥରେ ସର୍ବ ପ୍ରଥମେ କବି ସମ୍ରାଟ ଆଖ୍ୟା ଦେଲେ । ଗବେଷକ ସିଂହଙ୍କର ଏ ଉକ୍ତି

ଯଥାର୍ଥ, କାରଣ ଓଡ଼ିଆ ଓ ସଂସ୍କୃତ ସାହିତ୍ୟରେ ଯେତେ ପ୍ରକାର ଛନ୍ଦ ବନ୍ଧ ରହିଛି ସେସବୁର ପରୀକ୍ଷା ନିରୀକ୍ଷା ଓ ଅନୁଶୀଳନ କରି ଉପେନ୍ଦ୍ର ଭଞ୍ଜ ପ୍ରୟୋଗ କରିଥିଲେ ନିଜର କାବ୍ୟ କବିତାରେ । ଭାଷାରେ ଯେତେ ଶିଳ୍ପଚାତୁରୀ ଦେଖାଯାଇପାରେ ସେସବୁ ପରିପ୍ରକାଶିତ ଭଞ୍ଜ ସାହିତ୍ୟରେ । କବି ସମ୍ରାଟ ଉପେନ୍ଦ୍ର ଓଡ଼ିଆରେ ଯେଉଁଳି କାବ୍ୟ ବୈଚିତ୍ର୍ୟ ପ୍ରତିପାଦନ କରିଛନ୍ତି ଜାତୀୟ ସ୍ତରରେ କେବଳ ସଂସ୍କୃତକୁ ଛାଡ଼ିଦେଲେ ଭାରତର ଅନ୍ୟ କୌଣସି ପ୍ରାଦେଶିକ ଭାଷାରେ କାହାଦ୍ୱାରା ସେଭଳି ସମ୍ଭବ ହୋଇ ନାହିଁ । ପୁଣି ସମାଜର ସମସ୍ତ ଶ୍ରେଣୀଙ୍କ ଦ୍ୱାରା ଗ୍ରହଣୀୟ ତଥା ଆଦୃତ ହୋଇଲେ ଭିନ୍ନ ଭିନ୍ନ ରୁଚି ଓ ସ୍ତରର ସାହିତ୍ୟ ସୃଷ୍ଟି କରିବା କେବଳ ଉପେନ୍ଦ୍ରଙ୍କ ପକ୍ଷେ ହିଁ ସମ୍ଭବ ହୋଇଛି । ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ଯଥାର୍ଥରେ କହିଛନ୍ତି–

ଗାଏ ତୁମ୍ଭଗୀତ ସଭାରେ ପଣ୍ଡିତ
ପଢେ ପାଛ ତୁଷ୍ଟ ମନା,
ବିଲେ ବୋଲେ ଚଷା ଅନ୍ତପୁରେ ଯୋଷା
ନୃତ୍ୟ ରଙ୍ଗେ ବାରାଙ୍ଗନା ।

ଏ ପରିପ୍ରେକ୍ଷୀରେ ଏତିକି କୁହାଯିବ ଯେ– ଓଡ଼ିଆ ଭାଷା ସାହିତ୍ୟକୁ ଶବଦ ସମୁଦ୍ର ଅତିକ୍ରମ କରିଥିବା କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କର ଅବଦାନ ବାସ୍ତବରେ ଅତୁଳନୀୟ । ସେ ଏ ଜାତିର ସାଂସ୍କୃତିକ ଧାରାରେ ଏକ ଚିରନ୍ତନ ଉତ୍ସ । ଓଡ଼ିଆ ଭାଷା ପାଇଁ ଦଶ ହଜାର ନୂଆ ଶବ୍ଦ ସୃଷ୍ଟି କରିଥିଲେ । ସେ ସବୁର ପ୍ରୟୋଗ ପାଇଁ ଏକ ସ୍ୱତନ୍ତ୍ର ଗୀତାଭିଧାନ ପ୍ରଣୟନ କରିଥିଲେ । ଉଚ୍ଚକୋଟୀର ସାହିତ୍ୟ ସୃଷ୍ଟି କରି ଜାତୀୟ ସ୍ତରରେ ଓଡ଼ିଆଙ୍କର ସମ୍ମାନ ବଢ଼ାଇଥିଲେ । ଏ ଜାତିର ହୀନମନ୍ୟତା ଦୂର କରିବା ପାଇଁ କାବ୍ୟକୋଣାର୍କ ଗଢ଼ିଥିଲେ । ଓଡ଼ିଶାର ଗର୍ବ ଓ ଗୌରବ ସେହି ମହାନ ବ୍ୟକ୍ତିତ୍ୱ ସ୍ୱାଭିମାନୀ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ଓଡ଼ିଆ ଜାତିର ଚିର ନମସ୍ୟ ହୋଇ ରହିଥିବେ ।

---

ଅଶୋକନଗର,
ବ୍ରହ୍ମପୁର (ଗଞ୍ଜାମ) ।



ଜଟଣୀଠାରେ ଦକ୍ଷିଣ–ପୂର୍ବ ରେଳବାଇ ଆନୁକୂଲ୍ୟରେ ଆୟୋଜିତ ୩୯ତମ ରେଳବାଇ ସପ୍ତାହ ଉତ୍ସବକୁ ମାନ୍ୟବର ରାଜ୍ୟପାଳ ଶ୍ରୀ ବି. ସତ୍ୟ ନାରାୟଣ ରେଡ୍ଡୀ ଉଦ୍‌ଘାଟନ କରୁଛନ୍ତି ।

# ଶ୍ରମଶକ୍ତି ଓ ସମାଜ

ଅନିଳ କୁମାର ଦାସ

ଆମ ସଭ୍ୟତା ଓ ସମୃଦ୍ଧି ଯେଉଁମାନଙ୍କର ଶ୍ରମ ଦାନରେ ପରିପୁଷ୍ଟ ସେହି ଶ୍ରମିକମାନଙ୍କର ନାମ ଇତିହାସ ପୃଷ୍ଠାରେ ଲିପିବଦ୍ଧ ହୁଏ ନାହିଁ । କୋଣାର୍କ, ପୁରୀ, ଲିଙ୍ଗରାଜଠାରେ ଥିବା ପ୍ରସ୍ତର ଗାତ୍ରରେ ପ୍ରାଣ ସଞ୍ଚାର କରିଥିବା ଶିଳ୍ପୀମାନଙ୍କୁ ଆମେ ମନେ ରଖୁ ନାହୁଁ । ସେହିମାନଙ୍କୁ ସ୍ମରଣ କରି କବି ମାୟାଧର ମାନସିଂହ ଲେଖିଛନ୍ତି –

"ବନ୍ଦେ ବାରଶତ ଶିଳ୍ପୀ ନାମହୀନ ଧାମହୀନ ପ୍ରାଣୀ
ଇତିହାସ ନାହିଁ ତବ ତବ ଲାଗି ମୂକ କାଳ ବାଣୀ"

କଳକାରଖାନା, ଅଟ୍ଟାଳିକା, ରାସ୍ତାଘାଟ ଉପରେ ଖଟିଖିଆ ଶ୍ରମିକଙ୍କର ନାମ ଉଲ୍ଲେଖ କରାଯାଏ ନାହିଁ । କିନ୍ତୁ ଶ୍ରମ ଶକ୍ତିର ଉପଯୁକ୍ତ ବିନିଯୋଗର ହିଁ ଦେଶର ପ୍ରଗତି ସମ୍ଭବ । ଏହି ଉକ୍ତି ଅସ୍ୱୀକାର କରି ପାରିବେ ନାହିଁ । ସେଥିପାଇଁ ମହାତ୍ମାଗାନ୍ଧୀ କହିଛନ୍ତି "ଶ୍ରମଶକ୍ତି ଏକ ଅମୂଲ୍ୟ ଶକ୍ତି । ଏହା ସହିତ ସ୍ୱର୍ଣ୍ଣ ମୂଲ୍ୟକୁ ମଧ୍ୟ ତୁଳନା କରାଯାଇ ନପାରେ ।

ଶ୍ରମବଳରେ ସୃଷ୍ଟି ହୁଏ ପୁଞ୍ଜି । ପୁଞ୍ଜିର ଉପଯୁକ୍ତ ବିନିଯୋଗରେ ଦାୟିତ୍ୱ ନ୍ୟସ୍ତ ହୁଏ ପୁଞ୍ଜିପତିମାନଙ୍କ ହସ୍ତରେ । ସମୟକ୍ରମେ ପୁଞ୍ଜିପତିମାନେ ହୁଅନ୍ତି 'ମାଲିକ' । ବଂଶାନୁକ୍ରମେ ସେମାନେ ହୁଅନ୍ତି ସମାଜର ବୀର୍ଯ୍ୟଶାଳୀ ବ୍ୟକ୍ତି । ମାଲିକ ଓ ଶ୍ରମିକ ମଧ୍ୟରେ ସୃଷ୍ଟି ହୁଏ ବିଦ୍ରୋହର ପ୍ରାଚୀର । ସେଇଠୁ ଆରମ୍ଭ ହୁଏ ଶ୍ରେଣୀ ସଂଘର୍ଷ ।

ଯନ୍ତ୍ର ଶିଳ୍ପର ପ୍ରସାର ଫଳରେ ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ କଳକାରଖାନା ଗଢ଼ି ଉଠିଲା । ଏହାର ପ୍ରଭାବରେ ଆମର ସାମାଜିକ ଓ ଅର୍ଥନୈତିକ ପରିବର୍ତ୍ତନ ଘଟିଲା । ଗ୍ରାମାଞ୍ଚଳରେ ଖଟିଖିଆମାନେ କାମ ନପାଇ ସହରାଭିମୁଖୀ ହେଲେ । ଫଳରେ ମାଲିକମାନେ ଅଧିକ କାମ ନେଇ କମ୍ ମଜୁରି ଦେଲେ, ଶ୍ରମିକ ନିଯୁକ୍ତି, ଶ୍ରମିକ ସୁରକ୍ଷା, ନିଯୁକ୍ତି ସର୍ତ୍ତ ଓ ଦୁର୍ଘଟଣାଜନିତ ପାଇଁ କ୍ଷତି ପୂରଣ ପ୍ରଭୃତି ଆଇନ୍‌ଜନିତ ବ୍ୟବସ୍ଥା ନଥିବାରୁ ଶ୍ରମିକମାନେ ଶୋଷଣର ଶିକାର ହେଲେ । ଶୋଷଣ ମାତ୍ରାଧିକ ହେବାରୁ ଶ୍ରମିକମାନେ ଏକଜୁଟ ହେଲେ । ସେଇଠାରୁ ଜନ୍ମ ନେଲା "ଶ୍ରମ ଆନ୍ଦୋଳନ" ।

ବିଶ୍ୱ ଶ୍ରମ ଆନ୍ଦୋଳନର ଭିତ୍ତିଭୂମି ହେଉଛି ଇଂଲଣ୍ଡ । କାରଣ : ଶିଳ୍ପବିପ୍ଳବ ପ୍ରଥମେ ବ୍ରିଟେନ୍‌ରେ ଆରମ୍ଭ ହୋଇଥିଲା । ଶ୍ରମ ଆନ୍ଦୋଳନ ଆରମ୍ଭ ପରଠାରୁ ପୃଥିବୀର ଅନେକ ପରିବର୍ତ୍ତନ ଘଟିଲାଣି । ବିଶ୍ୱର ଶ୍ରମିକ ଶ୍ରେଣୀ ଏହି ସମସ୍ତ ମଧ୍ୟରେ ବହୁ ଘାତ ପ୍ରତିଘାତର ସମ୍ମୁଖୀନ ହୋଇ ନିଜର ସାଙ୍ଗଠନିକ ଶକ୍ତିକୁ ଦୃଢ଼ କରିପାରିଛନ୍ତି । ଶ୍ରମ ଆନ୍ଦୋଳନ ଇତିହାସର ସଂଘର୍ଷମୟ ଅଧ୍ୟାୟ । ଶ୍ରମିକ ମନରେ ଆଣି ଦେଇଛି ଆତ୍ମବିଶ୍ୱାସ । ପ୍ରେରଣା ଦେଇଛି ସଂଗଠନକୁ ଦୃଢ଼ କରିବା ପାଇଁ, ପ୍ରମାଣ କରିଦେଇଛି ଦେଶର ଉତ୍ପାଦିକା ଶକ୍ତି ବଢ଼ାଇବାକୁ ହେଲେ ଶ୍ରମିକର ସହଯୋଗ ଏକାନ୍ତ ଆବଶ୍ୟକ ।

ଜାତିର ପିତା (ଜନକ) ମହାତ୍ମାଗାନ୍ଧୀ କହିଛନ୍ତି "ପୁଞ୍ଜିପତିମାନେ ଶ୍ରମିକମାନଙ୍କୁ ଶୋଷଣ କରିପାରିବେ ନାହିଁ । ଯଦି ଶ୍ରମିକମାନେ ନିଜେ ଶୋଷଣର ଶିକାର ହେବାର ସୁଯୋଗ ନଦିଅନ୍ତି । ତେଣୁ ଶ୍ରମିକମାନେ ଏଥି ପାଇଁ ସଚେତନ ହେବା ଆବଶ୍ୟକ । ପୁଞ୍ଜିପତିମାନଙ୍କର ବୁଝିବା ଉଚିତ ଯେ, ଶ୍ରମିକମାନଙ୍କୁ ଶୋଷଣ କରିବାର ମନୋବୃତ୍ତି ରହିଲେ ମାଲିକ ଓ ଶ୍ରମିକମାନଙ୍କ ମଧ୍ୟରେ ସୁସମ୍ପର୍କ ରହିବ ନାହିଁ । ପରସ୍ପର ମଧ୍ୟରେ ବିଶ୍ୱାସ ଏବଂ ନିସ୍ୱାର୍ଥପରତାର ଭାବ ରହିଲେ ସୁସମ୍ପର୍କ ପ୍ରତିଷ୍ଠା ହୋଇପାରିବ ଓ ବୁଝାମଣା ଭିତରେ ଶିଳ୍ପ ବିବାଦର ସମାଧାନ ହୋଇପାରିବ ।

ଶ୍ରମିକ ସଂଘର କର୍ମକର୍ତ୍ତାମାନଙ୍କୁ ନିଜର କର୍ତ୍ତବ୍ୟ ସମ୍ପର୍କରେ ସଚେତନ କରାଇ ଗାନ୍ଧିଜୀ କହିଛନ୍ତି ଯେ, ପ୍ରତ୍ୟେକ କର୍ମୀ ନିଜକୁ ଅନ୍ୟ ଭାଇଭଉଣୀମାନଙ୍କ ଭିତରେ ସ୍ୱାର୍ଥାନ୍ୱେଷୀ ହେବେନାହିଁ । କର୍ମକର୍ତ୍ତାମାନେ ନିଜ ନିଜର ସଂଘକୁ ଆଭ୍ୟନ୍ତରୀଣ ସଂସ୍କାର ଦିଗରେ ଯେତିକି ବିନିଯୋଗ କରିବେ, ସେହି ପରିମାଣରେ ବାହ୍ୟ ଆକ୍ରମଣରୁ ରକ୍ଷାକରିବା ପାଇଁ ବିନିଯୋଗ କରିବେ । ଏହା ସ୍ମରଣ କରିବାକୁ ହେବ ଯେ, ପ୍ରତ୍ୟେକଙ୍କର ସୁଖ, ସୁବିଧା ଓ ଅଧିକାର ହାସଲ କରିବା ସଙ୍ଗେ ସଙ୍ଗେ କର୍ତ୍ତବ୍ୟ ପରାୟଣତା ଦରକାର । ସେହି ଅଧିକାର ପଛରେ ଯେଉଁ କର୍ତ୍ତବ୍ୟ ଓ ଅଧିକାର ଏବଂ ଦାୟିତ୍ୱ ରହିଛି ତାହାକୁ ମଧ୍ୟ ସ୍ୱୀକାର କରିବା ଏକାନ୍ତ ଆବଶ୍ୟକ । ମାଲିକମାନଙ୍କଠାରୁ ଉପଯୁକ୍ତ ମଜୁରି ଉଚିତ ମାନବିକ ବ୍ୟବହାର ଓ ସୁସ୍ଥ ପରିବେଶ ମଧ୍ୟରେ ରହିବା ସଙ୍ଗେ ସଙ୍ଗେ ସଚ୍ଚୋଟ ଓ କର୍ତ୍ତବ୍ୟନିଷ୍ଠ ହେବା ଦରକାର ।

ଗାନ୍ଧିଜୀଙ୍କର ଉକ୍ତିଗୁଡ଼ିକୁ ହୃଦବୋଧ କରି ଶ୍ରମିକ ସଂଘ ଓ ମାଲିକ୍‌ମାନେ ନିଜ ନିଜର ସାମାଜିକ ଦାୟିତ୍ୱ ବିଷୟରେ ସଚେତନ ହେବାର ଆବଶ୍ୟକତା ଅତିମାତ୍ରାରେ ଅନୁଭବ ହେଉଛି । ଶ୍ରମିକ ଶ୍ରେଣୀ ଓ ଶ୍ରମିକ ସଂଘର ନେତୃବୃନ୍ଦ କେବଳ ମାତ୍ର ଶ୍ରମିକମାନଙ୍କ ଅର୍ଥନୈତିକ ସମସ୍ୟା ସହିତ ଜଡ଼ିତ ନୁହନ୍ତି । ବିଶେଷ କରି ସମୂହ ସ୍ୱାର୍ଥ ସହିତ ଶ୍ରମିକମାନଙ୍କର ସ୍ୱାର୍ଥ ଅଙ୍ଗାଙ୍ଗୀ ଭାବେ ଜଡ଼ିତ ।

ବର୍ତ୍ତମାନ ଶ୍ରମିକମାନଙ୍କର କେତେକ ଦାବୀ ସୀମିତ ହୋଇ ରହିନାହିଁ । ସମଗ୍ର ପୃଥିବୀର ସ୍ୱାର୍ଥ ହେଉଛି ସାଧାରଣ

ଜୋର, କୃଷକ ଓ ମେହେନତକାରୀ ମଣିଷର ସ୍ୱାର୍ଥ । ଧର୍ମଘଟର ସଂଖ୍ୟାକୁ ଶ୍ରମିକମାନଙ୍କର ସଂଗ୍ରାମ ମନୋଭାବର ମାପକାଠି ରୂପେ ଗ୍ରହଣ କରି ଶ୍ରମିକର ଉତ୍ପାଦିକା ଶକ୍ତିକୁ କିପରି ବଢ଼ାଇବାକୁ ହେବ ସେ ବିଷୟରେ ଗଭୀର ଭାବରେ ଚିନ୍ତା କରିବାର ଦାୟିତ୍ୱ ଶ୍ରମିକ ସଙ୍ଘଗୁଡ଼ିକ ଉପରେ ନ୍ୟସ୍ତ । ଶ୍ରମିକ ସଙ୍ଘଗୁଡ଼ିକ ସମୁଦାୟ ଶ୍ରମିକ ଶ୍ରେଣୀର ପ୍ରତୀକ ହୋଇଥିବାରୁ ଦେଶର ପ୍ରଗତିରେ ସେମାନଙ୍କର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଉତ୍ପାଦନ ପାଇଁ ସବୁ ପ୍ରକାର ଅନୁକୂଳ ବାତାବରଣ ଥାଇ ମଧ୍ୟ ଶ୍ରମିକ ଓ ମାଲିକମାନଙ୍କ ମଧ୍ୟରେ ଉତ୍ତମ ବୁଝାମଣା ନ'ରହିଲେ, ଶ୍ରମିକମାନେ ଅଶାନ୍ତି ଓ ଧର୍ମଘଟ, ତାଲାବନ୍ଦର ଫଳ ସ୍ୱରୂପ ଉତ୍ପାଦନ ବାଧାପ୍ରାପ୍ତ ହୁଏ । ଶ୍ରମିକ ଓ ମାଲିକ ଉଭୟ କ୍ଷତିଗ୍ରସ୍ତ ହୁଅନ୍ତି । ଶିଳ୍ପ ସଂସ୍ଥା ରୁଗ୍ଣ ହୋଇପଡ଼େ ।

ଶ୍ରମିକ ଓ ମାଲିକମାନଙ୍କ ମଧ୍ୟରେ ସୁସମ୍ପର୍କ ସ୍ଥାପନ କରି ଶ୍ରମ ଶକ୍ତିର ବିନିଯୋଗ କରିବା ପାଇଁ ଶିଳ୍ପ ପରିଚାଳନାରେ ଶ୍ରମିକମାନଙ୍କୁ କିପରି ଭାବରେ ପରିଚାଳନା କରାଯିବ । କେଉଁ ସ୍ତରରେ ସେମାନେ ଅଂଶ ଗ୍ରହଣ କରିବେ ଏହାର ବାସ୍ତବିକ ରୂପରେଖ କ'ଣ ହେବ । ଏହାର ଫଳପ୍ରଦ ଆଇନ୍ ପ୍ରଣୟନ କରିବା ଦରକାର । ସ୍ୱେଚ୍ଛାକୃତ ଭାବରେ ମାଲିକ ଓ ଶ୍ରମିକ ଏଥିପାଇଁ ନୀତିନିର୍ଦ୍ଧାରଣ କରିବେ । ଏହିପରି ଅନେକ ପ୍ରଶ୍ନ ଉପରେ ବାଦାନୁବାଦ ସୃଷ୍ଟି ହୋଇଛି । କିନ୍ତୁ ସମସ୍ତଙ୍କର ମତ ଯେ, ଯଦି ସମସ୍ତ ମାଲିକ୍ ଓ ଶ୍ରମିକମାନଙ୍କ ମତ ପରିବର୍ତ୍ତନ ଘଟେ ତାହେଲେ ଏହା ହୋଇପାରିବ । ମାଲିକ ଓ ଶ୍ରମିକ ପରସ୍ପର ବିଶ୍ୱାସ ଭାଜନ ହେଲେ ହିଁ ଉଭୟଙ୍କ ମନୋଭାବରେ ପରିବର୍ତ୍ତନ ହେବ ।

ଆଜିର ଶ୍ରମିକ ବା ଶ୍ରମ ସଙ୍ଘ ବା କାରଖାନା ଲାଉଆଉଟି କାରଖାନା ଭିତରେ ସୀମାବଦ୍ଧ ନୁହେଁ । ଆମ ଦେଶ ତଥା ସମାଜର ସ୍ୱାର୍ଥ ମଧ୍ୟ ଏହା ସହିତ ଜଡ଼ିତ । ବର୍ତ୍ତମାନ ପରିସ୍ଥିତିରେ ସମସ୍ତଙ୍କୁ ଏକ ନୂତନ ଆଭିମୁଖ୍ୟ ନେଇ କାର୍ଯ୍ୟପନ୍ଥା ଗ୍ରହଣ କରିବାକୁ ପଡ଼ିବ । ଶ୍ରମିକ ଶ୍ରେଣୀ ସେମାନଙ୍କର ସାଧୁତା, ନମ୍ରତା, ଶୃଙ୍ଖଳାବୋଧ, ଜ୍ଞାନ ଓ ନିଜର କାର୍ଯ୍ୟପ୍ରତି ନିଷ୍ଠା ରଖିବାକୁ ପଡ଼ିବ । ଅପର ପକ୍ଷରେ ଶ୍ରମ ଶକ୍ତିର ସୁରକ୍ଷା ଓ ଉପଯୁକ୍ତ ବିନିଯୋଗ କରିବା ପାଇଁ ଦେଶର ସରକାର, ମାଲିକ ଓ ସାଧାରଣ ଲୋକଙ୍କୁ ସାମିଲ କରିବାକୁ ପଡ଼ିବ ।

---

ଗ୍ରାଃ-ପଟଣା, ପୋଃ-ବେଣ୍ଟକାର,
ଜିଲ୍ଲା-କଟକ ।




ବାଣୀବିହାରଠାରେ ଉତ୍କଳ ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗର ୨୫ତମ ସାମ୍ବତ୍ସରିକ ଉତ୍ସବକୁ ବିଧାନ ସଭା ବାଚସ୍ପତି ଶ୍ରୀ ଯୁଧିଷ୍ଠିର ଦାସ ଉଦ୍‌ଘାଟନ କରୁଛନ୍ତି ।

# ଖରାଟିଆ ଚାଷର ଉପକାରିତା

ଡଃ ଦାମୋଦର ଲେଙ୍କା

ଖରିଫ ଋତୁ ଆମର ପ୍ରଧାନ ଫସଲ ଋତୁ । ଜ୍ୟେଷ୍ଠ–ଆଷାଢ଼ ରୁଆ ସବୁ ଫସଲ ବୁଣା ହୋଇ ଫସଲର ଜୀବନକାଳ ଅନୁସାରେ ଭାଦ୍ରବଠାରୁ ଆରମ୍ଭ କରି ପୌଷ–ମାଘ ପର୍ଯ୍ୟନ୍ତ କଟାଯାଏ ବା ଉପୁଡ଼ା ଯାଏ । ଧାନ କାଟି ସାରି ବତର ଅନୁସାରେ ଦ୍ୱିତୀୟ ଫସଲ ବୁଣାଯାଏ ବା ଧାନ ଥାଇ କିଆରିରେ ମୁଗ, ବିରି, ବଣା, ରାସି ଇତ୍ୟାଦି ଛଟାଯାଏ ଏସବୁ ଫସଲ ବୃଷ୍ଟିପୁଷ୍ଟ ଅଞ୍ଚଳରେ ଫାଲଗୁନ–ଚୈତ୍ର ସୁଦ୍ଧା ଉଠି ଯାଇଥାଏ । ଯେଉଁଠି ରବି ଫସଲ ବୁଣିବାର ସୁବିଧା ନାହିଁ ସେଠି ଜମି ପଡ଼ିଆ ପଡ଼ିଥାଏ ।

ଫସଲ ବୁଣିବାଠାରୁ କାଟିବା ଭିତରେ ଜମି କ୍ରମେ ନରମରୁ ଟାଣ ହୋଇଯାଏ । ପରବର୍ତ୍ତୀ ଫସଲପାଇଁ ଜମିକୁ ଚାଷ କରି ହାଲୁକା ରଖିବା ଆବଶ୍ୟକ । ଏହି ଚାଷ ଖରାଦିନେ କରିବା ଭଲ । ମାଘଠାରୁ ଚୈତ୍ର ଭିତରେ କେତେ ଅସରା ବର୍ଷା ହୋଇଥାଏ । ମାଟିର ବତର ବଢ଼ିଯାଇଥାଏ । ଡାଲୁଅ ଧାନ କଟା ସରିଥାଏ । ମୁଗ ବିରି ଉପୁଡ଼ା ସରି ବିଲ ଖାଲିଥାଏ । ଏହି ସମୟରେ ବିଲକୁ ହଳକରି ଛାଡ଼ିଦେବା ଭଲ । ଏହାକୁ ଖରାଟିଆ ଚାଷ କୁହାଯାଏ । ଏହାଦ୍ୱାରା ଜମି ଖରାଖାଇ ସାର ହୋଇଥାଏ । ଆମର କଥାରେ ଅଛି–

ଯଦି ବରଷଇ ମାଘର ଶେଷ
ଧନ୍ୟ ସେ ରାଜା–ଧନ୍ୟରେ ଦେଶ
ମାଘ ମାସେ ବର୍ଷା ଯେବା
ରାଜା ଛାଡ଼େ ପ୍ରଜା ସେବା
ଯେଉଁ ବର୍ଷ ଘନ ଘନ ବୃଷ୍ଟି ମାଘ ମାସେ
ସେହି ବର୍ଷ ଶସ୍ୟ ବୃଦ୍ଧି ହୁଅଇ ବିଶେଷେ ।
ବରଷିଲେ ମେଘ ମକରେ
ଧାନ ଫଳ ହୁଏ ଟିକରେ
ମାଘ ମାସେ ହେଲେ ବର୍ଷା ଘନ ଘନ
ଟେକ ଜମିମାନ ହୁଏ ଶସ୍ୟ ପୂର୍ଣ୍ଣ
ଖାଲ ଢିପ ସବୁ ଜମି ଚଷିବ ହୁଅଇ
ତେଣୁ କରି ଫଳ ଲାଭ ବିଶେଷ ଘଟଇ ।

ଜମି ବତର ଥିବା ସମୟରେ ଗଭୀର ଭାବେ ହଳ କରି ଛାଡ଼ିଦେବା ଦରକାର । ଚାଷ ହେତୁ ଜମିରେ ସାନ ବଡ଼ ଢେଲୁଆ ହୁଏ । ଯେଉଁ ମାଟିରେ ବେଶୀ କାଦୁଅ ରହିଥାଏ, ଜୀଆ ମାଟି ରହିଥାନ୍ତି ସେ ମାଟିରେ ସେତେ ବେଶୀ ଢେଲୁଆ ହୁଏ । ଢେଲୁଆ ଭିତରେ ଫାଙ୍କ ଭିତରେ ବାୟୁ ସହଜରେ ଚଳାଚଳ କରେ । ତଳମାଟି ଉପରକୁ ଉଠିଆସେ । ଉପର ମାଟି ତଳକୁଯାଏ । ଫସଲ ମୂଳ ଉପୁଡ଼ିଯାଏ । ମାଟିରେ ମିଶେ । ମାଟି ଝାଉଁ ଝାଉଁ ହୋଇ ଶୁଖିଯାଏ । ଅତି ପୁରା କାଳରୁ ଜଣାଯାଇଛି ଯେ, ମାଟି ଭଲ ଭାବରେ ଗରମ ହୋଇଗଲେ ପରେ ଚାଷ କରାଯାଉଥିବା ଫସଲରୁ ଭଲ ଅମଳ ମିଳେ । ଏଥିପାଇଁ ମାଟିକୁ ପୋଡ଼ାଯାଏ । ଏଥିରେ ପାଳ, ନଡ଼ା, ଛଣଗୁଣ୍ଡି ପୁଞ୍ଜି ପୋଡ଼ି ଦିଆଯାଏ । ଏହା ଏକ ମୃତ୍ତିକା ଶୋଧନ କ୍ରିୟା । ବେଦରେ ଏହି ମୃତ୍ତିକା ଶୋଧନ କ୍ରିୟାକୁ ରାବ୍ କର୍ମ କୁହାଯାଇଛି । ଯେଉଁ ଅଞ୍ଚଳରେ ପ୍ରଚଣ୍ଡ ଖରାହୁଏ, ସେ ଅଞ୍ଚଳରେ ଜମିକୁ ଚାଷ କରି ଛାଡ଼ିଦେଲେ ମାଟି 'ଭାଜି ହୋଇଯାଏ । ଏହାକୁ ଆମ ଦେଶରେ ଓ ମିଶର ଦେଶରେ ସେଗାକି ବୋଲି କୁହାଯାଏ । ମାଟିକୁ ଶୁଖେଇ ଗରମ କଲେ ଏଥିରେ ଥିବା ଜୈବାଂଶ ବା ହ୍ୟୁମସର ତାପମାନ ବଢ଼ିଯାଏ ଏବଂ ପରେ ବର୍ଷାରେ ଓଦା ହେଲେ ଭଲ ଭାବରେ ସଢ଼ି ପଚିଯାଏ । ଏହା ହେତୁରୁ ପ୍ରଥମେ ଆମୋନିୟମ ଓ ପରେ ନାଇଟ୍ରେଟ୍ ନିଷ୍କାଳିତ ହୋଇ ଝରିଆସେ । ଏହି ପ୍ରକ୍ରିୟା ବର୍ଷା ହେବାର ୭–୮ ଦିନଯାଏ ଚାଲେ । ଯେତେ ଯୋରରେ ମାଟି ଖରା ଖାଇଥିବ ଏବଂ ଏଥିରେ ଯେତେ ବେଶୀ ଜୈବାଂଶ ଥିବ ମାଟି ଓଦାହେଲାପରେ ଏଥିରୁ ସେତେ ବେଶୀ ଯବକ୍ଷାରଯାନ ନିର୍ଗତ ହେବ ଏବଂ ଫସଲ ଏହି ଯବକ୍ଷାରଯାନ ଖାଇ ହୁ ହୁ ହୋଇ ବଢ଼ିବ । ଟାଣ ଖରା ପରେ ତୁହାକୁ ତୁହା ବର୍ଷା ହେଲେ ଝରିବା ନାଇଟ୍ରେଟ୍ ପରିମାଣ କ୍ରମେ କମି ଆସେ । ମାଟି ସମ୍ପୂର୍ଣ୍ଣ ଓଦା ହୋଇ ଶୀତଳ ହୋଇଗଲେ ଆଉ ଯବକ୍ଷାରଯାନ ଝରେ ନାହିଁ । ସାର ପ୍ରୟୋଗ କରି ଫସଲ ଚାହିଦା ପୂରଣ କରାଯାଇଥାଏ ।

ଚୈତ୍ର ଓ ବୈଶାଖ ମାସ ଝାଞ୍ଜି ଖରାରେ ମାଟି ଝାଉଁ ଝାଉଁ ହୋଇ ଶୁଖିଯାଏ । ଝୁଣା ହୋଇ ଶୁଖିଯାଏ । ଏହି ସମୟରେ ବାୟୁମଣ୍ଡଳର ତାପମାନ ୩୯–୪୫° ସେଲସିଅସ୍ ଓ ମାଟିର ତାପମାନ ୪୦–୪୭° ସେଲସିଅସ୍ ହୋଇଥାଏ । ଏହି ଖରାତାତିରେ ଅନାବନା ଘାସ, ମୂଳ ଶୁଖି ମରିଯାଏ । ମାଟି ଭିତରେ ଥିବା ବିଭିନ୍ନ ପୋକ, ସେମାନଙ୍କର ଖୋସା, କୋଟି ପୋକ ଅଣ୍ଡା ସବୁ ବାହାରି ପଡୁଥିବାରୁ ଖରା ଖାଇ ମରିଯାନ୍ତି ।

ମାଟିରେ ଥିବା ବିଭିନ୍ନ ରୋଗକାରି ବାକ୍ଟେରିଆ, ... କିରଣ କବକ, (ଆକ୍ଟିନୋ ମାଇସେଟିସ୍) ସୂତ୍ରକୃମି ଓ ଅନେକ ପ୍ରକାର ଅନିଷ୍ଟକାରି ଅଣୁ ଜୀବାଣୁ ମରିଯାଆନ୍ତି ବା ସେମାନଙ୍କର ସକ୍ରିୟତା ହ୍ରାସ ପାଇଥାଏ । ମାଟିରେ ଥିବା ମୁଥା, ... ସାରବେଣା, ଚଟୁଆ, ମୁଥାଁ ହଂସପାଦିଆ, ଗରଗଡ଼, ଢେଙ୍କୁଣୀ ... ଇତ୍ୟାଦି ଅନାବନା ତୃଣଙ୍କର ମୂଳ ଖରାଖାଇ ... ହୋଇଯାଏ । ପରେ ବର୍ଷାରେ ସଢ଼ି ପଚି ମାଟିରେ ମିଶିଯାଏ

ଖେତିରେ ସମ୍ଭାବନା ଯଥା କମ୍ ହୁଏ । ସେଗୁଡ଼ିକର ମଞ୍ଜି ମଧ୍ୟ ଖରାଖାର ଗଜା ହେବା ଗୁଣ ହରାନ୍ତି । ପରେ ବିଲ ବାଛିବା ଖର୍ଚ୍ଚ କମ୍ ହୁଏ ।

ମୃତ୍ତିକାରେ ଥିବା କର୍ଦ୍ଦମ କଣିକାର ଆକାର ଚେପ୍‌ଟା (ପାଳିକେ) ହୋଇଥିବାରୁ ଏହାର ସମ୍ପ୍ରସାରଣ ଓ ସଙ୍କୁଚନ ଗୁଣ ଅଛି । ଦାନାଗୁଡ଼ିକ ଖରାରେ ଶୁଖି ଛୋଟ ହୋଇ ବଳି ହୋଇଯାଆନ୍ତି । ତାପମାନ ବହୁତ ଥାଏ । ମାଟିରେ ଗୁଳିଲେ ଗୋଡ଼ ବି ତାତିଯାଏ । ମୌସୁମୀ ବୃଷ୍ଟିର ପ୍ରଥମ ଅପରାରେ ତାପମାନ ହ୍ରାସପାଏ । କ୍ରମେ ମାଟିରୁ ବାଷ୍ପ ଉପରକୁ ଉଠିଯାଏ । ମାଟିରୁ ବାହାରୁଥିବା ବାସନା ମଧ୍ୟ ବଦଳିଯାଏ । ଢେଲୁଆର କର୍ଦ୍ଦମାଂଶ ପାଣି ଶୋଷ ଫଉଲି ଉଠେ । ଢେଲୁଆଁ ପରେ ବଢ଼ିଯାଏ । ଶୁଖିଲା ମୃତ୍ତିକା କଣିକା ଗୁଡ଼ିପଟେ ପାଣି ପରସ୍ପର ପରସ୍ପର ହୋଇ ଲାଖିଯିବାରୁ ଦାନାଗୁଡ଼ିକର ପରସ୍ପର ପ୍ରତି ଆକର୍ଷଣ କମିଯାଏ । ସେମାନେ ପରସ୍ପରଠାରୁ ଛାଡି ଅଲଗା ହୋଇଯାଆନ୍ତି । ମାଟି ବଉଳିଯାଏ । ଝୁରି ଝୁରିଆ ହୋଇ ଖସିପଡ଼େ । ଢେଲୁଆଁ ଫାଙ୍କ ସବୁ ବନ୍ଦ ହୋଇଯାଏ । ମାଟି ବେଶୀ ପାଣି ଧରି ରଖେ । ଉଠୁଥିବା ଗଛର ଚେର ଶକ୍ତ ହୋଇଯାଏ । ଗଛରୁ ଶୀଘ୍ର ପିଲ ବାହାରେ । ହିସାବରୁ ଜଣାପଡ଼େ ଯେ ମାଟିର ଗୁଣ, ଖରାର ତାତି ଓ ମାଟି କେତେଦିନ ଖରା ଖାଇଲା–ଇତ୍ୟାଦି ବିଷୟ ଉପରେ ନିର୍ଭର କରି ହେକ୍ଟର ପ୍ରତି ପ୍ରାୟ ୧୦୦–୧୮୦ କି: ଗ୍ରା: ଯବକ୍ଷାରଯାନ ଯୋଗାଇଥାଏ । ଏହି ନିର୍ଦ୍ଦିଷ୍ଟ ଯବକ୍ଷାରଜାନ ବ୍ୟବହାର କରି ବଢ଼ିବା ପାଇଁ ଫସଲ ଅଗତୁରା ବୁଣାହେବା ଦରକାର । ନଚେତ୍ ଏ ଯବକ୍ଷାରଜାନ ପାଣିରେ ତଳକୁ ବହିଯାଇ ନଷ୍ଟ ହେବ । ଫସଲ ପାଇ ପାରିବ ନାହିଁ । ଏହି କାରଣରୁ ଆମର ଜମି ଖରାଦିନେ ହଳକରି ଛାଡ଼ିଦିଆଯାଏ ଏବଂ ଖରୁଡ଼ି ଧାନ ବୁଣାଯାଏ । ଖରୁଡ଼ି ବୁଆ ଯବକ୍ଷାରଜାନ ପାଇ ଶୀଘ୍ର ବଢ଼େ । ସେଇଥିପାଇଁ କୁହାଯାଏ ଖରୁଡ଼ିବୁଆ ଦେରି ବୁଆଠାରୁ ଭଲ । ବୁଣାକୁ ରୁଆ ସରି ନୁହେଁ ।

ଏହା ଗ୍ରୀଷ୍ମ ଋତୁ ସମୟର କଥା । ଖାଲ ଜମିରେ ଏଇଥିପାଇଁ ଆମେ ସାର ନ ଦେଲେ ମଧ୍ୟ ଅମଳ ହ୍ରାସ ପାଏ ନାହିଁ । ଖରାଟିଆ ଗ୍ରୀଷ୍ମ ହୋଇଥିବା ଜମିରେ ବାୟୁମଣ୍ଡଳର ଯବକ୍ଷାରଜାନ ସ୍ଥିରିକରଣ ବୃଦ୍ଧି ପାଇଥାଏ । ଯେତେ ଯାହା ହେଲେବି ଖରାଟିଆ ଗ୍ରୀଷ୍ମରୁ ଅନ୍ୟୂନ ହେକ୍ଟର ପିଛା ୩୦–୩୫ କି: ଗ୍ରା: ଯବକ୍ଷାରଜାନ ମିଳିଥାଏ ।

ଏଣୁ ଖରାଟିଆ ଗ୍ରୀଷ୍ମ ହେତୁ ମାଟିର ଭୌତିକ ରାସାୟନିକ ଓ ଜୈବିକ ଗୁଣର ପରିବର୍ତ୍ତନ ହୁଏ । ସୁସ୍ଥ ସବଳ ଓ ନିରୋଗ ହୋଇ ଫସଲ ବଢ଼େ । ଟାଣ ଖରାଟିଆ ଗ୍ରୀଷ୍ମ ଜମିରେ ଫସଲ ଶୀଘ୍ର ବଢ଼େ, ସେଥିରେ ରୋଗ ପୋକ ଲାଗନ୍ତି ନାହିଁ । ଖରୁଡ଼ି ବୁଆ ଆଗ ବେଉଷଣ ହୁଏ, ଆଗ କଟାହୁଏ । କର୍ଷଣ ହେତୁ ମୃତ୍ତିକା ଗଠନ ବୃଦ୍ଧିପାଏ, ମାଟି ଫସଫସିଆ ହୁଏ । ତା ଭିତରୁ ବାୟୁ ବାହାରକୁ ଓ ବାହାରୁ ଭିତରକୁ ସହଜରେ ଚଳ ପ୍ରଚଳ କରିପାରେ । ମଞ୍ଜି ଏକ ମଛା ହୋଇ ଗଜାହୁଏ । ଚେର ଟାଣ ହୁଏ । ଖୁବ୍ ତଳକୁଯାଏ । ମାଟି ବେଶୀ ପାଣି ଧରି ରଖେ । ମାଟିରେ ଜଳ ସହଜରେ ପ୍ରବାହିତ ହୁଏ ଓ ଜଳ ପରିବାହିତା ବୃଦ୍ଧିପାଏ । ଖରାହେଲେବି ଚେର ତଳୁ ସଂଗ୍ରହଣ କରି ନିଜର ଅଭାବ ପୂରଣ କରିପାରେ । ଉପର ମାଟି ଗୁଣ୍ଡ କରି ମଇଦେଲେ ମାଟିରୁ ବାଷ୍ପୀଭବନ ହ୍ରାସ ପାଇଥାଏ । ଗ୍ରୀଷ୍ମ ହେତୁ ଖତ ସାର ମାଟିରେ ଭଲ ଭାବରେ ମିଶିଯାଏ । ସମାନ ଭାବରେ ଫସଲ ପାଇପାରେ । ଫସଲ ଏକମଛା ହୋଇ ବଢ଼େ ।

ପାଗ ଯୋଗ ଠିକ୍ ଥିଲେ ଖରୁଡ଼ି ବୁଣା ଫସଲରୁ ରୁଆ ଫସଲ ଅପେକ୍ଷା ବେଶୀ ଅମଳ ମିଳିଥାଏ । ଏଣୁ ଖରାଟିଆ ଗ୍ରୀଷ୍ମ ଏକାନ୍ତ ଆବଶ୍ୟକ ।

ଅଧ୍ୟକ୍ଷ, ସମ୍ପ୍ରସାରଣ ଶିକ୍ଷା ବିଭାଗ,
ଓ.ୟୁ.ଏ.ଟି, ଭୁବନେଶ୍ୱର ।

# ସେଇ ମୋ ସୁନାର ଭାରତ

ବିମଳା ସିଂ (ଗୀତା)

ଯେଉଁ ଦେଶର ଗଙ୍ଗା ଗାଏ
ଶାନ୍ତି ପ୍ରୀତିର ସଙ୍ଗୀତ
ଯେଉଁ ଦେଶର ହିମାଚଳ
କହିଯାଏ ମୁକ୍ତ ଭାରତ
ବାଧା ଦିଏ ଶତ୍ରୁ–ପିଇଯାଏ ଶତ୍ରୁ ରକତ
ସେଇ ଦେଶରେ ଜନମ ମୋର
ସେଇ ମୋ ସୁନାର ଭାରତ ।।୧।।

କାଶ୍ମିରଠାରୁ କନ୍ୟାକୁମାରୀ
ମୌସୁମୀ ଯା'ର ବହିଯାଏ ଧୀରେ
ଚୁପି ଚୁପି କାନେ ଦେଇଯାଏ ମନ୍ତ୍ର
ଜବାବ ଦେବାକୁ ଶତ୍ରୁରେ
ସେଇ ଦେଶର ସନ୍ତାନ ମୁଁ ଯେ
ରଖିବି ତାର ମହତ
ସେ ଯେ ମୋ.......... ।।୨।।

ବିଶ୍ୱ ବୁକୁରେ ମହାନ୍ ଯା'କଳା
ସଂସ୍କୃତି ଯା'ର ଉନ୍ନତ
ସାଗରର ଢେଉ ଧୁଏ ଯା'ପୟର
ଧୀର ସମୀରଣ ବହିତ
ସେଇ ଦେଶର ନାଗରିକ ମୁଁରେ
ରଖିବି ଯା'ର ନାଆଁତ
ସେ ଯେ ମୋ.......... ।।୩।।

ସହକାରୀ ଶିକ୍ଷୟିତ୍ରୀ,
କୋଦଳା ଉଚ୍ଚ ବାଳିକା ବିଦ୍ୟାଳୟ,
ଗଞ୍ଜାମ ।



ଆନ୍ଧ୍ର ସାଂସ୍କୃତିକ ପରିଷଦଠାରେ ମାନ୍ୟବର ରାଜ୍ୟପାଳ
ଶ୍ରୀ ବି: ସତ୍ୟନାରାୟଣ ରେଡ୍ଡୀ ପ୍ରଭୁ ରାମଚନ୍ଦ୍ରଙ୍କ ପ୍ରତିମୂର୍ତ୍ତି
ନିକଟରେ ଭକ୍ତିପୂର୍ଣ୍ଣ ଶ୍ରଦ୍ଧାଞ୍ଜଳି ଜଣାଉଛନ୍ତି ।



ଅଶୋକାଷ୍ଟମୀ ଉପଲକ୍ଷେ ଆୟୋଜିତ ପ୍ରଭୁ ଲିଙ୍ଗରାଜଙ୍କ ରଥଯାତ୍ରା
ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ।



ବାଣୀବିହାରଠାରେ ଆୟୋଜିତ ଅଷ୍ଟମ ସର୍ବ ଭାରତୀୟ ପ୍ରାଣୀ ବିଜ୍ଞାନ
କଂଗ୍ରେସକୁ ମାନ୍ୟବର ରାଜ୍ୟପାଳ ଶ୍ରୀ ବି: ସତ୍ୟନାରାୟଣ ରେଢ଼ୀ
ଉଦ୍‌ଘାଟନ କରୁଛନ୍ତି ।



ସଚିବାଳୟଠାରେ ଜାତୀୟ ପଛୁଆ ବର୍ଗ ଆୟୋଗର ଅଧ୍ୟକ୍ଷ ବିଶ୍ଵରପତି
ଆର୍: ଏନ୍: ପ୍ରସାଦ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କୁ ଭେଟି
ଆଲୋଚନା କରୁଛନ୍ତି ।



ଭୁବନେଶ୍ୱରଠାରେ ସ୍ୱର୍ଗତ ବିଶ୍ୱନାଥ ଦାସଙ୍କ ୧୦୬ତମ ଜନ୍ମବାର୍ଷିକୀ ପାଳନ ଅବସରରେ
ମାନ୍ୟବର ରାଜ୍ୟପାଳ ଶ୍ରୀ ବି: ସତ୍ୟନାରାୟଣ ରେଡ୍ଡୀ ଅଭିଭାଷଣ ଦେଉଛନ୍ତି ।



ସୂଚନା ଭବନଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ପ୍ରଖ୍ୟାତ୍ କଳାକାରମାନଙ୍କୁ
ପୁରସ୍କାର ପ୍ରଦାନ କରୁଛନ୍ତି ।



ବାଣୀବିହାରଠାରେ ଆୟୋଜିତ ଅଷ୍ଟମ ସର୍ବ ଭାରତୀୟ ପ୍ରାଣୀ ବିଜ୍ଞାନ
କଂଗ୍ରେସକୁ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଉଦ୍‌ଘାଟନ
କରୁଛନ୍ତି ।



ଭୁବନେଶ୍ୱରଠାରେ ଗଣଶିକ୍ଷା ମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘଡ଼େଇ ଉଚ୍ଚ ମାଧ୍ୟମିକ
ସାର୍ଟିଫିକେଟ୍ ପରୀକ୍ଷା କେନ୍ଦ୍ରମାନ ବୁଲି ଦେଖୁଛନ୍ତି ।



ଭୁବନେଶ୍ୱରଠାରେ ରାଜ୍ୟସ୍ତରୀୟ ଓଡ଼ିଶା ଦିବସ ପାଳନ ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଶାରୀରିକ ଅକ୍ଷମ ବ୍ୟକ୍ତିମାନଙ୍କୁ ରେଡକ୍ରସ୍ ପୁରସ୍କାର ପ୍ରଦାନ କରୁଛନ୍ତି ।




ଭୁବନେଶ୍ୱରଠାରେ ସର୍ବ ଭାରତୀୟ ଲୋକ ସମ୍ପର୍କ ଦିବସ ଉପଲକ୍ଷେ ଆୟୋଜିତ ଏକ ବୈଠକରେ ସୂଚନା ଓ ଲୋକ ସମ୍ପର୍କ ବିଭାଗର ନିର୍ଦ୍ଦେଶକ ଶ୍ରୀ ସୁରସେନ ଜେନା ଅଭିଭାଷଣ ଦେଉଛନ୍ତି ।



ସଚିବାଳୟଠାରେ ଅନୁଷ୍ଠିତ ଏକ ସାମ୍ବାଦିକ ସମ୍ମିଳନୀରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ।



ଭୁବନେଶ୍ୱରଠାରେ ଆୟୋଜିତ ତୃତୀୟ ଗୋପୀନାଥ ମହାନ୍ତି ସ୍ମାରକୀ ବକ୍ତୃତାମାଳାକୁ ଜବାହରଲାଲ ନେହେରୁ ବିଶ୍ୱବିଦ୍ୟାଳୟର ପ୍ରଫେସର ନାମଓ୍ୱାର ସିଂହ ଉଦ୍‌ଘାଟନ କରୁଛନ୍ତି ।

# ସାଂସ୍କୃତିକ ଜୀବନରେ ଶିମିଳିପାଳ

ଜାନକୀ ବଲ୍ଲଭ ଦାଶ

ମୟୂରଭଞ୍ଜ ମୁଖ୍ୟତଃ ଏକ ଆଦିବାସୀ ଅଧ୍ୟୁଷିତ ଜିଲ୍ଲା । ଏହି ଜିଲ୍ଲାର ମୁଖ୍ୟ ଜୀବିକା ଭାବେ, ଜଙ୍ଗଲ ହିଁ ଆବହମାନ କାଳରୁ ଏକ ମୁଖ୍ୟ ଭୂମିକା ଗ୍ରହଣ କରିଆସିଛି । ଜଙ୍ଗଲରୁ ଲଘୁ ବନ୍ୟଜାତ ଦ୍ରବ୍ୟ ସଂଗ୍ରହ କରି, ପ୍ରାୟ ଲକ୍ଷାଧିକ ଆଦିବାସୀ ପରିବାର ନିଜର ଜୀବିକା ଉପାର୍ଜନ କରି ଆସିଥିବାର ଅନେକ ଦୃଷ୍ଟାନ୍ତ ରହିଛି । ମୟୂରଭଞ୍ଜ ଜିଲ୍ଲାର, ଶିମିଳିପାଳ ପର୍ବତମାଳା ଓ ଜଙ୍ଗଲ, ଆଦିବାସୀ ଜନଜୀବନରେ ଏକ ମୁଖ୍ୟ ଭୂମିକାରେ ଅବତୀର୍ଣ୍ଣ ହୋଇ ଆସିଛି । ସାଂସ୍କୃତିକ ଜୀବନଧାରାରେ ମଧ୍ୟ, ଶିମିଳିପାଳ ପର୍ବତମାଳାର ଅବଦାନ ନ୍ୟୁନ ନୁହେଁ । ଆଦିବାସୀ ଓ ଅଣ-ଆଦିବାସୀ ସମ୍ପ୍ରଦାୟମାନଙ୍କର ଜୀବନଯାତ୍ରାକୁ ଏକ ସୁସାଂସ୍କୃତିକ ରୂପ ଦେବାରେ ଶିମିଳିପାଳର ପ୍ରତ୍ୟେକ ବନ୍ୟଜନ୍ତୁ, ବୃକ୍ଷଲତା ଓ ଜୋରନାଳ,ନିଜର ପ୍ରତିଟି ପ୍ରାଣ ଦେଇ ଆସିଛି । ଆଦିବାସୀମାନେ ନିଜର ବାର୍ଷିକ ପର୍ବପର୍ବାଣୀ, ଯଥା- ଅଖଣ୍ଡ ଶିକାର, ବନଦେବୀ ପୂଜା, ବସନ୍ତ ପୂଜା, କୁମ୍ଭୀ ପୂଜା ଇତ୍ୟାଦି ସାଂସ୍କୃତିକ ଓ ଧାର୍ମିକ ପର୍ବମାନଶିମିଳିପାଳର ଆଖପାଖ ଅଞ୍ଚଳରେ ପ୍ରତିପାଦିତ କରୁଥିଲାବେଳେ, ଅଣଆଦିବାସୀ-ସହରୀମାନେ, ଶିମିଳିପାଳର ଚିତ୍ରକାରି ଓ ସବୁଜିମା ମାଧ୍ୟମରେ, ସିନେମା ମାଧ୍ୟମରେ ଅନେକ କାର୍ଯ୍ୟକ୍ରମ ସମ୍ପାଦନ କରିବାର ଦୃଷ୍ଟାନ୍ତମାନ ରହିଛି ।

ଅଣଆଦିବାସୀ ମୁଖ୍ୟତଃ ଓଡ଼ିଶା ଓ ଭାରତବର୍ଷର ଚିତ୍ର ନିର୍ମାଣ ଓ ନିର୍ଦ୍ଦେଶକମାନେ, ଶିମିଳିପାଳକୁ ବିଭିନ୍ନ ଉପାୟରେ ନିଜର ପ୍ରତିଭା ପ୍ରଦର୍ଶନର ଏକ ମୁଖ୍ୟ ମାଧ୍ୟମ ରୂପେ ବ୍ୟବହାର କରିଆସିଛନ୍ତି । ବିଗତ ୧୯୭୬ରେ ସ୍ଥାନୀୟ ନିର୍ମାତା ଗଣେଶ ଚନ୍ଦ୍ର ଜୀଉ ଓ ନିର୍ଦ୍ଦେଶକ ମଧୁ ମେହେରଙ୍କ ନିର୍ଦ୍ଦେଶନାରେ ବାରିପଦାର ପ୍ରଥମ ଓଡ଼ିଆ ଚିତ୍ର "ଅଭିମାନ"ର ସମ୍ପୂର୍ଣ୍ଣ ସୁଟିଂ ଏହି ଶିମିଳିପାଳର ସୁନ୍ଦର ବାତାବରଣ ମଧ୍ୟରେ ସମାପ୍ତ ହୋଇଥିଲା । ଏହା ପରେ ପରେ, ଅନ୍ୟ ଏକ ପ୍ରଯୋଜକ ଜୀବନ ମହାନ୍ତି, ତାଙ୍କର ଏକ ଚିତ୍ର "ଜୀବନମୃତ୍ୟୁ" ମାଧ୍ୟମରେ ମଧ୍ୟ ଶିମିଳିପାଳର ଚିର ସବୁଜିମାକୁ ଅତି ସୁନ୍ଦର ଭାବରେ କ୍ୟାମେରା ଦ୍ୱାରା ପରିସ୍ଫୁଟ କରିଥିଲେ । ଏହା ପରେ ପରେ, କଲିକତାର ଏକ ବଙ୍ଗଳା ଚିତ୍ର "ଦୀପା"ରେ ଦୀପାଙ୍କର ଦେଙ୍କ ସହ ହିନ୍ଦୀ ସିନେମାର ଅଭିନେତ୍ରୀ, ସୋମା ଆନନ୍ଦଙ୍କ ବଦନ ସହ ଶିମିଳିପାଳରେ ପାଣି, ପବନ ନାଚିଯିବା ଆସିଥିଲେ । ଅନେକ ଦିନ ଧରି ସିନେମାରେ ଏହି ପାହାଡ଼, ଶିମିଳିପାଳ ଦେଖିପାରି ନଥିଲା, କିନ୍ତୁ ପ୍ରଯୋଜକ ବଟକୃଷ୍ଣ ନାୟକଙ୍କ ପ୍ରଥମ ଫିଲ୍ମ "ଫୁଲଚନ୍ଦନ" ଦ୍ୱାରା, ଶିମିଳିପାଳର ଆକର୍ଷଣୀୟ ପର୍ଯ୍ୟଟନସ୍ଥଳୀ, ଜରଣ୍ଡା, ବରେହିପାଣି, ନଓଣା ଇତ୍ୟାଦି ସ୍ଥାନଗୁଡ଼ିକ ଏତେ ସୁନ୍ଦର ଭାବରେ ଚିତ୍ରିତ ହୋଇଥିଲା ଯେ ଏହା ପୁନର୍ବାର ଦେଶ-ବିଦେଶର ଅନେକ ଚିତ୍ର ନିର୍ମାତାମାନଙ୍କୁ ଏଠାରେ ସୁଟିଂ କରିବା ପାଇଁ ପ୍ରଲୋଭିତ କରିଥିଲା । ଏହି ଚିତ୍ରର ଏକ ଗୀତ "ଏଇ ଯେ ବନଲତା ପାହାଡ଼, ଆହାରେ ଦିଶେ କେଡେ ସୁନ୍ଦର" ସେତେବେଳେ ଶିମିଳିପାଳର ଯୌବନକୁ ଶୀର୍ଷ ସୋପାନରେ ପହଞ୍ଚାଇ ଥିଲା । ଏହା ପରେ ପରେ ପ୍ରଯୋଜକ ବଟକୃଷ୍ଣ ନାୟକଙ୍କ ଚିତ୍ର "ମାନିନୀ", "ରଜନୀଗନ୍ଧା"ର ସୁଟିଂ କାର୍ଯ୍ୟ ମଧ୍ୟ ଏହି ଶିମିଳିପାଳରେ ହୋଇଥିଲା । ପ୍ରଯୋଜକ ଶ୍ରୀନାୟକଙ୍କ ପ୍ରତ୍ୟେକଟି ଚିତ୍ରରେ, ଶିମିଳିପାଳର ପର୍ବତମାଳା, ଏହାର ବନ୍ୟଜନ୍ତୁ, କାଠ କାରବାର ଓ ଜଙ୍ଗଲ ଇତ୍ୟାଦିର ଅତୀବ ଆକର୍ଷଣୀୟ ଢଙ୍ଗରେ ଚିତ୍ରଣ, ଦର୍ଶକମାନେ ଆଜି ମଧ୍ୟ ମନେରଖିଛନ୍ତି ।

ଏହା ପରେ ପରେ, ଓଡ଼ିଶାର ଅନ୍ୟ କେତେକ ଚିତ୍ର ନିର୍ମାତାମାନେ, ଶିମିଳିପାଳର ଏହି ଦୃଶ୍ୟରାଜିକୁ ନିଜ ଚିତ୍ରର କାହାଣୀରେ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଦେଇ ଏହାର ସରଳ ଆଦିବାସୀ ଜୀବନଯାତ୍ରା ଓ ସାଂସ୍କୃତିକ ପ୍ରତିଭାକୁ ଦର୍ଶକମାନଙ୍କଠାରେ ଅନାବରଣ କରିଥିଲେ । ୧୯୯୩ର ରାଷ୍ଟ୍ରୀୟ ପୁରସ୍କାର ବିଜେତା, ମିଥୁନ ଚକ୍ରବର୍ତ୍ତୀଙ୍କୁ ନେଇ ପ୍ରସିଦ୍ଧ ନିର୍ଦ୍ଦେଶକ, ବୁଦ୍ଧଦେବ ଦାସଗୁପ୍ତାଯେତେବେଳେ,"ତହାଦେର କଥା"ର ସୁଟିଂ, ଶିମିଳିପାଳର ଏକ ପାଦଦେଶରେ କଲେ, ସେତେବେଳେ ସମଗ୍ର ଦେଶର ପତ୍ରପତ୍ରିକାରେ ଶିମିଳିପାଳର ଅବର୍ଣ୍ଣନୀୟ ଦୃଶ୍ୟସବୁ ସ୍ଥାନ ପାଇଲା । ଏହା ପରେ ପରେ ବିପ୍ଳବ ରାୟ ଚୌଧୁରୀଙ୍କ ଚିତ୍ର "ଅରଣ୍ୟରୋଦନ"ର ସମ୍ପୂର୍ଣ୍ଣ ସୁଟିଂ, ଶିମିଳିପାଳର ଆଦିବାସୀ ଜୀବନ ଓ ପ୍ରାଚୀନ ପରମ୍ପରା, ଦୃଶ୍ୟ ମଧ୍ୟରେ ୧୯୯୩ରେ ସୁଟିଂ ସମାପ୍ତ ହୋଇଛି । ଏହି ଚିତ୍ରର ମୁଖ୍ୟ ଆକର୍ଷଣ ହେଲା, ଏଠାରେ ବସବାସ କରୁଥିବା ଆଦିବାସୀମାନଙ୍କର ଜୀବନଶୈଳୀ ଓ ବାଦ୍ୟଯନ୍ତ୍ର ଇତ୍ୟାଦିର ପ୍ରଚୁର ଉପଯୋଗ ଏହି ସିନେମାରେ କରାଯାଇଛି । ଏହି ସମୟରେ ମାତ୍ରାମର ପ୍ରସିଦ୍ଧ ଚିତ୍ର ନିର୍ମାତା, ଏ: ପୂର୍ଣ୍ଣଚନ୍ଦ୍ର ରାଓଙ୍କ ବଙ୍ଗଳା-ଓଡ଼ିଆ ଦ୍ୱିଭାଷୀ ଚିତ୍ର "ଅକୁହା କଥା"ର ସମ୍ପୂର୍ଣ୍ଣ ସୁଟିଂ ମୟୂରଭଞ୍ଜ ଜିଲ୍ଲାରେ ଓ ଅନେକ ଫାଇଟସ୍ ଓ ରୋମାନ୍ଟିକ୍ ଦୃଶ୍ୟସବୁର ସୁଟିଂ ଶିମିଳିପାଳରେ । ବଙ୍ଗଳା ସିନେମାର ପ୍ରଖ୍ୟାତ ନିର୍ଦ୍ଦେଶକ ତରୁଣ ମଜୁମଦାରଙ୍କୁ ଶିମିଳିପାଳ ଏତେ ଆକର୍ଷଣୀୟ ଲାଗିଲାଯେ, ସେ ଏଠାରେ ଆହୁରି ସିନେମା କରିବାପାଇଁ ଇଚ୍ଛା କରିଛନ୍ତି ।

ଏହି ସମୟରେ ବାରିପଦାର ନିର୍ମାତା ବିଜୟ ମାହାପାତ୍ରଙ୍କ ଚିତ୍ର "ଗୋପରେ ବଢୁଛି କଳାକହ୍ନେଇ" ଓ ବିଜୟ ମିଶ୍ରଙ୍କ ରୋମାଣ୍ଟିକ ଚିତ୍ର "ସାଗର-ଗଙ୍ଗା"ର ଅନେକଭାଗ ସୁଟିଂ ଏହି ଶିମିଳିପାଳରେ ହୋଇଛି । ଶିମିଳିପାଳ ଆଜି ମଧ୍ୟ ପ୍ରକୃତିର ଏକ ରହସ୍ୟ ଭଳି ଦଣ୍ଡାୟମାନ । ସାଂସ୍କୃତିକ ଜୀବନରେ ଏହା ଏତେ ବଡ଼ ଭୂମିକା

ନେବ ବୋଲି, କେହି କେବେ କଳ୍ପନା କରିପାରୁ ନଥିଲେ । ବମ୍ବେର ଫିଲ୍ମସିଟି ବା ଭୁବନେଶ୍ୱରର କଳିଙ୍ଗ ଷ୍ଟୁଡିଓରେ ମିଛ ଜଳପ୍ରପାତ , ଜଙ୍ଗଲ, ପଶୁ, ମନ୍ଦିର, ଝରଣାକୁ ବହୁ ଅର୍ଥ ଦେଇ, ନିଜ ଚିତ୍ର ଉପଯୋଗ କରୁଥିବା ଏହି ନିର୍ମାତାଗଣ ଏବେ ଜାଣିପାରିଲେଣି ଯେ, ଶିମିଳିପାଳରେ ଏହି ସବୁ ଉପାଦାନ ପ୍ରକୃତିଦତ୍ତ । ଏଠାରେ ଲୋକମାନେ ମଧ୍ୟ ଭାରି ସହଯୋଗୀ ଓ ସରଳ । ଶିମିଳିପାଳ ମଧ୍ୟରେ ପ୍ରାୟ ନଅଗୋଟି ବଙ୍ଗଳା ରହିଛି ଓ ଲୁଲୁଂଠାରେ ଏକ ଓ: ଟି: ଡି: ସି:ପରିଚାଳିତ ଅତିଥିଗୃହ । ରାଜ୍ୟ ସଂସ୍କୃତି ବିଭାଗ ତରଫରୁ ଓ ଓଡ଼ିଶା ଫିଲ୍ମ ଉନ୍ନୟନ ନିଗମ ଦ୍ୱାରା ଶିମିଳିପାଳକୁ ଆହୁରି ଉନ୍ନତତର ଭାବେ ସଂସ୍କୃତିକ ଜୀବନରେ ଜଡ଼ିଦେବାର ପଦକ୍ଷେପ ନେବା ଆବଶ୍ୟକ ।

ସିନେମାର ଦୃଶ୍ୟ ଓ ଶ୍ରାବ୍ୟ ମାଧ୍ୟମରେ ଶିମିଳିପାଳର ପ୍ରା... ଶୋଭା ଜୀବନ୍ତ ହୋଇ ସମସ୍ତଙ୍କ ପ୍ରାଣରେ ଯେପରି ... ମୂର୍ଚ୍ଛନା, ସେହିଭଳି ଉଦ୍ୟମ ପାଇଁ ଜିଲ୍ଲା ଜଙ୍ଗଲ ବିଭାଗ ... ରାଜ୍ୟ–କେନ୍ଦ୍ର ସରକାରମାନେ ଦୃଷ୍ଟିଦେବା ଉଚିତ ବୋଲି ... ମତ ଦେଇଛନ୍ତି । ଏଥିରୁ ରାଜ୍ୟ ସରକାର ଏକ ବିପୁଳ ... ପାଇବା ସଙ୍ଗେ ସଙ୍ଗେ ଶିମିଳିପାଳର ସୁରକ୍ଷା ଦିଗରେ ... ଆଗାମୀ ଭବିଷ୍ୟତରେ ଏକ ନୂଆ ସୂତ୍ରପାତ ହେବବୋଲି ... ଅନୁଶୀଳନରୁ ଜଣାପଡ଼େ ।

ଜିଲ୍ଲା ପ୍ରତିନିଧି "ଅମୃତ ବଜାର ପତ୍ରିକା",
ଶ୍ରୀରାମଜୀ ଭବନ, ଟେମ୍ପଲ୍ ଷ୍ଟ୍ରୀଟ୍,
ବାରିପଦା–୭୫୭୦୦୧ ।



ମାଲକାନଗିରି ଜିଲ୍ଲା ଉନ୍ନୟନ କକ୍ଷେ ପୂର୍ବାଞ୍ଚଳ ଭାରତୀୟ ତୈଳ ନିଗମର କାର୍ଯ୍ୟ ନିର୍ବାହୀ ନିର୍ଦ୍ଦେଶକ ଶ୍ରୀ ଜି: ମଲ୍ଲିକ ସଚିବାଳୟଠାରେ ମୁଖ୍ୟମନ୍ତ୍ରୀଙ୍କ ହାତରେ ୬·୫ ଲକ୍ଷ ଟଙ୍କାର ଏକ ବ୍ୟାଙ୍କ୍ ଡ୍ରାଫ୍ଟ୍ ପ୍ରଦାନ କରୁଛନ୍ତି ।

# ଓଡ଼ିଶା ରାଜ୍ୟ ସମବାୟ ଦୁଗ୍ଧ ଉତ୍ପାଦନ ମହାସଙ୍ଘ ଲିଃ : ଏକ ଦୃଷ୍ଟିପାତ

ଧୀରେନ୍ କୁମାର ଦାସ

ଓଡ଼ିଶାକୁ ଦୁଗ୍ଧ ଉତ୍ପାଦନରେ ଆତ୍ମନିର୍ଭରଶୀଳ କରିବା ଲକ୍ଷ ନେଇ ଓମ୍‌ଫେଡ୍ ରାଜ୍ୟରେ ଦୁଗ୍ଧ ବନ୍ୟା ଯୋଜନା କାର୍ଯ୍ୟକ୍ରମ ୧୯୮୧ ମସିହାରେ ଆରମ୍ଭ କରିଥିଲା । ଦୁଗ୍ଧ ବନ୍ୟା ଯୋଜନାର ପ୍ରଥମ ପର୍ଯ୍ୟାୟ ଓଡ଼ିଶାରେ ଆରମ୍ଭ ହୋଇପାରି ନଥିଲା, କିନ୍ତୁ ଦୁଗ୍ଧ ବନ୍ୟା ଯୋଜନା ୨ୟ ପର୍ଯ୍ୟାୟରେ କଟକ, ପୁରୀ, ଢେଙ୍କାନାଳ ଓ କେନ୍ଦୁଝର ଜିଲ୍ଲାକୁ ନେଇ କାର୍ଯ୍ୟକ୍ରମ ଆରମ୍ଭ କରାଗଲା ।

୧୯୮୭ ମସିହା ଅକ୍ଟୋବର ମାସରେ ଦୁଗ୍ଧ ବନ୍ୟା ଯୋଜନା ୩ୟ ପର୍ଯ୍ୟାୟରେ ଉପରୋକ୍ତ ୪ଟି ଜିଲ୍ଲା ସାଙ୍ଗକୁ ୧୯୮୯ ମସିହା ଅଗଷ୍ଟ ମାସରେ ସମ୍ବଲପୁର ଜିଲ୍ଲାକୁ ଏହି ଯୋଜନାରେ ଅନ୍ତର୍ଭୁକ୍ତ କରାଗଲା । ୧୯୯୧ ମସିହା ଏପ୍ରିଲ ମାସଠାରୁ ଗଞ୍ଜାମ ଜିଲ୍ଲାରେ ଓମ୍‌ଫେଡ୍ ଏବଂ ଓଡ଼ିଶା ସରକାରଙ୍କ ପ୍ରତ୍ୟକ୍ଷ ସହଯୋଗରେ ସ୍ୱିଜରଲାଣ୍ଡ ସରକାରଙ୍କ ଆର୍ଥିକ ସହାୟତାରେ ଏକ ଗୋ-ପ୍ରଜନନ କାର୍ଯ୍ୟକ୍ରମ ଆରମ୍ଭ କରାଯାଇ ଅଦ୍ୟାବଧି ଚାଲୁ ରହିଛି ।

ଏହି ଯୋଜନା ମାଧ୍ୟମରେ ୧୫ଟି ଦୁଗ୍ଧ ଶୀତଳୀକରଣ କେନ୍ଦ୍ର ପ୍ରତିଷ୍ଠା କରାଯାଇଅଛି । ଦୈନିକ ସଂଗୃହିତ ୭,୫୦୦୦ ଲିଟର ଦୁଗ୍ଧ ଶୀତଳୀ କରାଯାଇ ତା'ର ୭୦ ଭାଗ କ୍ଷମତା ବିନିଯୋଗ ହୋଇଅଛି । ସେହିପରି ୩ଟି ଡାଏରୀ ପ୍ଲାଣ୍ଟ ପ୍ରତିଷ୍ଠା କରାଯାଇ ଦୈନିକ ୮୬,୦୦୦ ଲିଟର ଦୁଗ୍ଧ ବିକ୍ରୀ କରାଯାଉଅଛି । ଚଳିତ ବର୍ଷ ସର୍ବାଧିକ ୧,୦୮,୦୦୦ ଲିଟର ଦୁଗ୍ଧ ବିକ୍ରିକରି ରେକର୍ଡ଼ ସୃଷ୍ଟି କରାଯାଇଅଛି ।

ମୋଟ ୬୦,୬୩୯ ଜଣ ଦୁଗ୍ଧ ଉତ୍ପାଦକ, ୮୦୯ଟି ସମବାୟ ସମିତି ଜରିଆରେ ସେମାନଙ୍କର ବଳକା ଦୁଗ୍ଧ ବିକ୍ରୀ କରି, ଦୁଗ୍ଧ ମୂଲ୍ୟ ଠିକ୍ ସମୟରେ ପାଇଁ ପାରୁଛନ୍ତି ।

ଦୁଗ୍ଧ ଉତ୍ପାଦନକୁ ପ୍ରୋତ୍ସାହିତ କରିବାପାଇଁ ଗୋ-ଖାଦ୍ୟ କାରଖାନା ତାଲିମ କେନ୍ଦ୍ର, ଛଡ଼ା ପାଳନ କେନ୍ଦ୍ର, ଘାସବୃକ୍ଷ ପ୍ରଦର୍ଶନ କେନ୍ଦ୍ର, କୃତ୍ରିମ ପ୍ରଜନନ କେନ୍ଦ୍ର, ସଂଘ ଦ୍ୱାରା ପ୍ରାକୃତିକ ସେବା କେନ୍ଦ୍ର ଇତ୍ୟାଦି ବିଭିନ୍ନ କାର୍ଯ୍ୟକ୍ରମ ଚାଲୁଅଛି । ଉତ୍ପାଦନ ବୃଦ୍ଧି ନିମନ୍ତେ ଏକ ସର୍ବାଧୁନିକ ଗୋ-ରଣ କେନ୍ଦ୍ର ମଧ୍ୟ ଏନ୍.ଡି.ଡି.ବି. ରାଜ୍ୟ ସରକାର ଓ କେନ୍ଦ୍ର ସରକାର ସହାୟତାରେ ସୃଷ୍ଟି କରାଯାଇଅଛି ।

ଏତଦ୍ ବ୍ୟତୀତ, ଦୁଗ୍ଧ ସଂଗ୍ରହ ଓ ଦୁଗ୍ଧ ଏବଂ ଦୁଗ୍ଧଜାତ ଦ୍ରବ୍ୟ ବିକ୍ରୟ ମାଧ୍ୟମରେ ଓମ୍‌ଫେଡ୍ ପ୍ରାୟ ୭୦,୦୦୦ ପରିବାରଙ୍କୁ ପ୍ରତ୍ୟକ୍ଷ ଭାବରେ କର୍ମସଂସ୍ଥାନ ଯୋଗାଇ ପାରିଛି ।

ଓମ୍‌ଫେଡ୍ ଆର୍ଥିକ କ୍ଷେତ୍ରରେ ବହୁ ଅସୁବିଧାର ସମ୍ମୁଖୀନ ହୋଇ ମଧ୍ୟ ରାଜ୍ୟରେ ଦୁଗ୍ଧ ଉତ୍ପାଦକମାନଙ୍କୁ ଦୁଗ୍ଧର ସଂଗ୍ରହ ମୂଲ୍ୟ ସମଗ୍ର ଦେଶରେ ପ୍ରାୟ ଅଧିକ ଦେଉଅଛି । ଚଳିତବର୍ଷ ଅନ୍ୟ କେତେକ ରାଜ୍ୟ ଦୁଗ୍ଧ ସଂଗ୍ରହ ମୂଲ୍ୟରେ ହ୍ରାସ କରିଥିଲେ ମଧ୍ୟ ଓମ୍‌ଫେଡ୍ ଦୁଗ୍ଧ ସଂଗ୍ରହ ମୂଲ୍ୟହ୍ରାସ କରିନାହିଁ ।

ରାଜ୍ୟର ବିଭିନ୍ନ ଖାଉଟୀମାନଙ୍କ ସ୍ୱହିଦାକୁ ପୂରଣ କରିବା ପାଇଁ ଓମ୍‌ଫେଡ୍ ଆଗରୁ ଦୁଇ ପ୍ରକାରର ଦୁଗ୍ଧ ଯଥା : ଟୋନଡ୍ ଓ ଡବଲ୍ ଟୋନଡ୍ ବିକ୍ରୟ କରୁଥିଲେ ମଧ୍ୟ ଏକ ନୂତନ ପ୍ରକାରର ଦୁଗ୍ଧ (ଷ୍ଟାଣ୍ଡାଡ଼ାଇଜ୍‌ଡ ମିଲ୍‌କ) ଚଳିତ ବର୍ଷ ଜାନୁଆରୀ ମାସ ୨୬ ତାରିଖରୁ ବିକ୍ରୟ ଆରମ୍ଭ କରିଛି । ଓମ୍‌ଫେଡ୍ ଦ୍ୱାରା ପ୍ରସ୍ତୁତ ଘିଅ ଏହାର ଗୁଣାତ୍ମକ ମାନ ଯୋଗୁ ସମଗ୍ର ରାଜ୍ୟରେ ଆଦୃତ ହୋଇପାରିଛି । ସୁବାସିତ ଦୁଗ୍ଧ, ଟେବୁଲ୍ ବଟର, ଛେନା, ମିଠାଦହି ଓ ପନିର୍ ଇତ୍ୟାଦି ବିଭିନ୍ନ ପ୍ରକାରର ଦୁଗ୍ଧ ଜାତ ଦ୍ରବ୍ୟ ପ୍ରଚୁର ପରିମାଣରେ ପ୍ରସ୍ତୁତ କରି ଓମ୍‌ଫେଡ୍ ସମଗ୍ର ରାଜ୍ୟର ଖାଉଟୀମାନଙ୍କୁ ଯୋଗାଇବା ସଙ୍ଗେ ସଙ୍ଗେ ରାଜ୍ୟ ବାହାରେ ଏଗୁଡ଼ିକର ବିକ୍ରୟ ନିମନ୍ତେ ଚେଷ୍ଟା ଅବ୍ୟାହତ ରଖିଛି ।

ବିଭିନ୍ନ କାର୍ଯ୍ୟକ୍ରମ ପାଇଁ ଓମ୍‌ଫେଡ୍ ରାଷ୍ଟ୍ରୀୟ ଡାଏରୀ ବିକାଶ ପରିଷଦରୁ ଋଣ ଲାଭ କରି ନିୟମିତ ଭାବରେ ଏହା ପରିଶୋଧ କରୁଛି ।

ଅତୀତରେ ରାଜ୍ୟର ଖାଉଟୀମାନଙ୍କର ସ୍ୱହିଦା ମେଣ୍ଟାଇବା ପାଇଁ ଓମ୍‌ଫେଡ୍‌କୁ ରାଜ୍ୟ ବାହାରୁ ଦୁଗ୍ଧ ସଂଗ୍ରହ କରିବାକୁ ପଡୁଥିଲା । କିନ୍ତୁ ଚଳିତ ବର୍ଷ ଦୁଗ୍ଧ ଉତ୍ପାଦକମାନଙ୍କର ଉଦ୍ୟମ ଓ ସହଯୋଗ ଯୋଗୁଁ ଓମ୍‌ଫେଡ୍ ଏହାର ଦୁଗ୍ଧ ସଂଗ୍ରହରେ ଯଥେଷ୍ଟ ବୃଦ୍ଧି କରି ପାରିଛି, ଫଳରେ ରାଜ୍ୟର ଖାଉଟୀମାନଙ୍କର ସ୍ୱହିଦା ମେଣ୍ଟାଇବା ସଙ୍ଗେ ସଙ୍ଗେ ବଳକା ଦୁଗ୍ଧକୁ ପଡ଼ୋଶୀ ରାଜ୍ୟକୁ ଯୋଗାଇବା ପାଇଁ ଓମ୍‌ଫେଡ୍ ସକ୍ଷମ ହୋଇପାରିଛି ।

ଆସନ୍ତୁ ଦୁଗ୍ଧ ଉତ୍ପାଦକ, ପରିବହନକାରୀ ରିଟେଲର କର୍ମଚାରୀ ସମସ୍ତେ ସମବାୟ ସୂତ୍ରରେ ଆବଦ୍ଧ । ଓମ୍‌ଫେଡ୍ ଦୁଗ୍ଧ

ସଂଗ୍ରହ ଓ ବିକ୍ରିକରି ୭୦,୦୦୦ ପରିବାରର ଭରଣପୋଷଣର ଦାୟିତ୍ୱ ନେଇଛନ୍ତି । ଦୁଗ୍ଧ ବିକ୍ରିବଟା ମାଧ୍ୟମରେ ବାର୍ଷିକ ୧୫୬ କୋଟି ଟଙ୍କା ପଲ୍ଲୀଅଞ୍ଚଳରୁ ସଂଗ୍ରହ କରାଯାଇ ଦୁଗ୍ଧ ଉତ୍ପାଦକ ପରିବାରଙ୍କୁ ଯୋଗାଇ ଦିଆଯାଇଅଛି । ଫଳରେ ହାରାହାରି ବାର୍ଷିକ ପାରିବାରିକ ଆୟ ୨,୩୦୦ ଟଙ୍କା ଅଧିକା ହୋଇପାରିଛି, କେବଳ ସେତିକି ନୁହେଁ, ଖରା, ବର୍ଷା ଓ ଶୀତ ଋତୁରେ ମଧ୍ୟ ଦୁଗ୍ଧ ବିକ୍ରିର କିଛି ଅସୁବିଧା ହେଉ ନାହିଁ, ଲୋକେ ଗୋ-ପାଳନ ଏକ ଜୀବିକା ବୋଲି ଉପଲବ୍ଧି କରିଛନ୍ତି ।

ଓମ୍‌ଫେଡ୍‌ ଏହି ସଫଳତା ପଛରେ ରହିଛି, ଦୁଗ୍ଧ ଉତ୍ପାଦକ ଓ ଦୁଗ୍ଧ ବିକ୍ରେତାମାନଙ୍କର ଅସୀମ ସହଯୋଗ ଅଧି ଖାଉଟୀମାନଙ୍କର ଓମ୍‌ଫେଡ୍‌ ପ୍ରତି ପ୍ରଗାଢ଼ ବିଶ୍ୱାସ ଏହି ସହିତ ସମ୍ପୃକ୍ତ ବ୍ୟକ୍ତି ବିଶେଷ ଓ ଅନୁଷ୍ଠାନମାନଙ୍କର ପ୍ରତ୍ୟେକ ଓଡ଼ିଶା ସରକାରଙ୍କର ସହଯୋଗ ।

ଉପ-ପରିଚାଳକ,
ଓମ୍‌ଫେଡ୍‌ ।



ସଚିବାଳୟଠାରେ ଅନୁଷ୍ଠିତ ଆଦିବାସୀ ଉପଦେଷ୍ଟା କମିଟି ବୈଠକରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଉଦ୍‌ବୋଧନ ଦେଉଛନ୍ତି ।

# ଉତ୍ତର–ପୂର୍ବ ଉପାନ୍ତ ଅଞ୍ଚଳରେ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତି

ଡଃ ନଗେନ୍ଦ୍ରନାଥ ମହାପାତ୍ର

## ଓଡ଼ିଶା ଓ ତାହାର ଉପାନ୍ତ ଅଞ୍ଚଳ :

ବର୍ତ୍ତମାନ ଓଡ଼ିଶା କହିଲେ ୧୯୩୬ ମସିହା ଅପ୍ରେଲ ପହିଲାରୁ ପୁନର୍ଗଠିତ ଭୂଖଣ୍ଡ – ଭାରତର ଏକ ସ୍ୱତନ୍ତ୍ର ପ୍ରଦେଶ । ଏହାର ଉତ୍ତର–ପୂର୍ବ ଦିଗରେ ପଶ୍ଚିମ ବଙ୍ଗ, ଉତ୍ତର ଦିଗରେ ବିହାର, ଦକ୍ଷିଣ ଦିଗରେ ଆନ୍ଧ୍ର ପ୍ରଦେଶ, ପଶ୍ଚିମ ଦିଗରେ ମଧ୍ୟ ପ୍ରଦେଶ ଓ ପୂର୍ବରେ ବଙ୍ଗୋପସାଗର ଅବସ୍ଥିତ । ଓଡ଼ିଶାର ଉପାନ୍ତ ଅଞ୍ଚଳ କହିଲେ ସେହି ସବୁ ଅଞ୍ଚଳକୁ ବୁଝାଏ, ଯାହା ଓଡ଼ିଶା ସୀମା ଶେଷରେ ଅଛି; ଓଡ଼ିଶା ପ୍ରଦେଶ ଭିତରେ ବା ବାହାରେ ଅନ୍ୟ କେଉଁ ପ୍ରଦେଶରେ ଥାଉ । ଐତିହାସିକ ଉତ୍କଳ ସାମ୍ରାଜ୍ୟର ସୀମା ବହୁକାଳ ପର୍ଯ୍ୟନ୍ତ ଉତ୍ତରରେ ଗଙ୍ଗାଠାରୁ ଦକ୍ଷିଣରେ ଗୋଦାବରୀ ନଦୀ ପର୍ଯ୍ୟନ୍ତ ବିସ୍ତୃତ ରହିଥିଲା । ଉତ୍ତରରେ କେତେବେଳେ ସେ କାଳର ଗୌଡ଼ ଦେଶ ଉପରେ ବି ଓଡ଼ିଶାର ଆଧିପତ୍ୟ ଥିଲା । ଓଡ଼ିଶାର ପଶ୍ଚିମ ସୀମାନ୍ତ ବହୁକାଳ ଯାବତ୍ ଏବର ମଧ୍ୟ ପ୍ରଦେଶର ପୂର୍ବାଞ୍ଚଳ ପର୍ଯ୍ୟନ୍ତ ବିସ୍ତୃତ ଥିଲା । କେତେବେଳେ ଦୂରକୁ ଆହୁରି ପଶ୍ଚିମକୁ ବିସ୍ତୃତ ଥିଲା । ସେ ଓଡ଼ିଶା ୧୯୩୬ ମସିହା ଅପ୍ରେଲ ପହିଲାରେ ଗଠିତ ଓଡ଼ିଶା ପ୍ରଦେଶଠୁ ଆକାରରେ ଥିଲା ବହୁତ ବହୁତ ବଡ଼ ।

ଓଡ଼ିଶାର ଉତ୍ତର–ପୂର୍ବ ଉପାନ୍ତ ଅଞ୍ଚଳ କହିଲେ ବାଲେଶ୍ୱର ଓ ମୟୂର ଭଞ୍ଜ ଜିଲ୍ଲାର ଉତ୍ତର ପୂର୍ବାଞ୍ଚଳ ଓ ତତ୍‌ସଂଲଗ୍ନ ମେଦିନୀପୁର ଜିଲ୍ଲା ଅନ୍ତର୍ଗତ ଦକ୍ଷିଣ– ପଶ୍ଚିମାଂଶର ସମଗ୍ର ଓଡ଼ିଆ ଭାଷା ଭାଷୀ ଅଞ୍ଚଳକୁ ବୁଝାଏ । ତନ୍ମଧ୍ୟରୁ ମେଦିନୀପୁର ଜିଲ୍ଲା ଅନ୍ତର୍ଗତ ଅଞ୍ଚଳ ବିସ୍ମୃତ ପ୍ରାୟ କଳିଙ୍ଗ ଅଥବା ଉତ୍କଳ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ରହିଥିଲା । ଏ ଅଞ୍ଚଳର ଅଧିବାସୀ ଗଣ ଓଡ଼ିଆ ଭାଷା କହୁଥିଲେ । ଓଡ଼ିଆରେ ଲେଖୁଥିଲେ, ଓଡ଼ିଆ ପଢୁଥିଲେ । ସଂସ୍କୃତିର ରୂପ ଉତ୍କଳୀୟ ଥିଲା । ଓଡ଼ିଆ ସଂସ୍କୃତିର ବାର୍ତ୍ତାବହ ହିସାବରେ ଓଡ଼ିଆ ସାହିତ୍ୟ ସୃଷ୍ଟି ହୋଇଥିଲା । ଓଡ଼ିଆ ସଂସ୍କୃତଜ୍ଞ ପଣ୍ଡିତ ଓ ବିଦ୍ୱାନମାନଙ୍କ ଦ୍ୱାରା ପ୍ରଣୀତ ବହୁ ଉପାଦେୟ ସଂସ୍କୃତ ଗ୍ରନ୍ଥ ଓ ବ୍ୟବହାର ଶାସ୍ତ୍ରର ଶତ ସଂଖ୍ୟକ ପାଣ୍ଡୁ ଲିପି ତଥା ଓଡ଼ିଆ କାବ୍ୟକାରମାନଙ୍କ ଦ୍ୱାରା ଲିଖିତ ପୁରାଣ, କାବ୍ୟ ଓ ଚଉତିଶା–ଭଜନ ଆଦିର ଶତ ଶତ ପୋଥି ଏ ଅଞ୍ଚଳର ପ୍ରାୟ ସର୍ବତ୍ର ଏବେ ଦୃଷ୍ଟିଗୋଚର ହୁଏ । ଓଡ଼ିଆ ଭାଷାର ଲୋକ ସାହିତ୍ୟ ଓ ସଙ୍ଗୀତରେ ଏ ଅଞ୍ଚଳ ସମୃଦ୍ଧ । ଓଡ଼ିଶାର ଉତ୍ତର ପୂର୍ବାଞ୍ଚଳୀୟ ଉପଭାଷା କଥିତ ରୂପେ ଭିନ୍ନ ଭିନ୍ନ ଅଞ୍ଚଳରେ ସାମାନ୍ୟ ଭିନ୍ନତାର ସହ ଏ ସମଗ୍ର ଅଞ୍ଚଳରେ ପ୍ରଚଳିତ । ଓଡ଼ିଆ ଓ ବଙ୍ଗଳାରେ ବହୁ ପ୍ରସିଦ୍ଧ କୃତି ସମୂହରେ ଏ ଉପ ଭାଷାର ପ୍ରୟୋଗ ଓ ପ୍ରଭାବ ପରିଲକ୍ଷିତ ହୁଏ ।

ଏ ସମଗ୍ର ଅଞ୍ଚଳରେ ଦେଖାଯାଉଥିବା ଅଗଣିତ ଦେବମନ୍ଦିର ଓ ପୀଠ ସ୍ଥଳ ଏବଂ ବାସଗୃହଗୁଡ଼ିକ ଓଡ଼ିଶୀ ସ୍ଥାପତ୍ୟ ରୀତିରେ ନିର୍ମିତ ହୋଇଅଛି । ଦେବସ୍ଥାନମାନଙ୍କରେ ପ୍ରଚଳିତ ଅନୁଷ୍ଠାନ, ଭୋଗ ରାଗ, ପର୍ବ ପର୍ବାଣୀ, ମେଳା ମଉଛବ ଓଡ଼ିଆ ରୀତିରେ ସମ୍ପାଦିତ ହେଉଥିଲା ଓ ଏବେ ବି ହେଉଛି ।

ଏ ସମଗ୍ର ଅଞ୍ଚଳର ପ୍ରତି ଗ୍ରାମରେ ଭାଗବତ ଟୁଙ୍ଗୀ ରହିଥିଲା । ଲୋକମାନଙ୍କ ଘରେ ତାଳପତ୍ର ପୋଥି, ପୁରାଣ, କାବ୍ୟ ଶାସ୍ତ୍ର ପ୍ରଭୃତି ସର୍ବଦା ଭକ୍ତି ସହକାରେ ପ୍ରତ୍ୟହ ପୂଜିତ ଓ ପଠିତ ହେଉଥିଲା । ନାରାୟଣ ରୂପୀ ଭାଗବତ ଗାଦି ରହିଥିବା ଭାଗବତ ଟୁଙ୍ଗୀ ଗ୍ରାମର ବହୁ ଲୋକଙ୍କର ସାନ୍ଧ୍ୟ ମିଳନ, ବିଶ୍ରମ୍ଭ ଆଲୋଚନା, ଦଣ୍ଡ କ୍ଷମାର ସ୍ଥଳ, ଶାନ୍ତି ଶୃଙ୍ଖଳା ରକ୍ଷା ଓ ଅଧ୍ୟାତ୍ମ ଭାବ ପ୍ରସ୍ଫୁରଣ ପୀଠ ରୂପେ ବିରାଜମାନ କରୁଥିଲା । ବାରମାସ ଯାକ ବିଭିନ୍ନ ସମୟରେ ଲୀଳା, ସୁଆଙ୍ଗ, ପାଲା, ଦାସକାଠିଆ, ନାଚ ଗୀତ, ଓଡ଼ା, ପାଟ ଆଦି "ତେରପର୍ବ" ଲାଗି ରହିଥିଲା ।

ଓଡ଼ିଆ ସାଧବ ପୁଅ ସାତ ସମୁଦ୍ର ତେରନଈ ପାରି ହୋଇ ବେପାର ବାଣିଜ୍ୟ କରି ଫେରୁଥିଲେ ସାଧବ ବୋହୂମାନେ ଆନନ୍ଦରେ ସେମାନଙ୍କୁ ଘରକୁ ପାଛୋଟି ଆଣୁଥିଲେ । ପରିଜନମାନେ ବୋଇତରୁ ଧନରତ୍ନ ବୋହି ଆଣୁଥିଲେ । ତା'ର ନିଦର୍ଶନ ଏବେ କାର୍ତ୍ତିକ ପୂର୍ଣ୍ଣିମାରେ କଦଳୀ ବାସୁଙ୍ଗ ଭସାଣରେ ସୀମାବଦ୍ଧ । କର୍ପୂର ଉଡ଼ିଯାଇଛି, ପଡ଼ି ରହିଛି–କନାଖଣ୍ଡିକ । ଏବେ ରହିଛି ସେ ସବୁର ସ୍ମୃତି କେବଳ – ସେ ସ୍ମୃତିର ଏକ କରୁଣ ଆଲେଖିକା– 'ତଅପୋଇ' କାହାଣୀ ।

ବହୁ ଐତିହାସିକ ସ୍ମୃତି ବିଜଡ଼ିତ ତାମ୍ର ଲିପ୍ତି ପିପିଲି ଓ ବାଲେଶ୍ୱର ବନ୍ଦରର ଗୌରବ ଆଜି ଅବଲୁପ୍ତ । ସାଧବ ପୁଅର ପାରମ୍ପରିକ ସାହସିକ ଜଳଯାତ୍ରା ଏ ଅଞ୍ଚଳର ଲୋକ ଗୀତରେ ବର୍ଣ୍ଣିତ ।

ଏସବୁ ଅଞ୍ଚଳ ଦିନେ ଓଡ଼ିଆ ପାଇକମାନଙ୍କର କୁହାଟ ଓ ଧାରଡ଼ି ଶବ୍ଦରେ ମୁଖରିତ ହେଉଥିଲା । ଓଡ଼ିଶାର ଗଜପତିମାନେ ସମରାଭିଯାନରେ, ଶିକାରାଭିଯାନରେ ବିଜେ କଲାବେଳେ ଗଜଯୂଥ–ଧୂଳି–ଧୂସରିତ ହେଉଥିଲା ଗ୍ରାମଦାଣ୍ଡ । ରାଇବଣିଆ, ମନ୍ଦାରଣ ପରି ସୁବୃହତ୍ ବହୁ ଭଗ୍ନ ଦୁର୍ଗ ଏ ସବୁର ମୂକ ସାକ୍ଷୀ ।

କାଳର କରାଳ ଗତିରେ, ରାଜନୈତିକ ଉତ୍‌ଥାନ–ପତନ ମଧ୍ୟରେ ଅତୀତର ସେ ପ୍ରାଚୀନ କଳିଙ୍ଗର ସାମ୍ରାଜ୍ୟ ନାହିଁ କିମ୍ବା

ସେ ସମସ୍ତ ଅଞ୍ଚଳ ଆଜି ଆଧୁନିକ ଓଡ଼ିଶା ପ୍ରଦେଶ ଭିତରେ ନାହିଁ। ତେବେ ଏସବୁ ଅଞ୍ଚଳର ଲୋକ. ସମାଜ ପରିବର୍ତ୍ତିତ ପରିସ୍ଥିତିରେ ପଡ଼ୋଶୀ ରାଜ୍ୟ ସହିତ ମିଶି ଯିବାରେ ବାଧ ହୋଇଛନ୍ତି। ଆମର ଆଲୋଚ୍ୟ ଉତ୍ତର ପୂର୍ବ–ଉପାନ୍ତ ଅଞ୍ଚଳର ମେଦିନିପୁର ଲୋକମାନେ ବର୍ତ୍ତମାନ ପ୍ରଚଳିତ ବଙ୍ଗ ଭାଷା ଶିଖୁଛନ୍ତି। ପଢୁଛନ୍ତି। ଘରେ ଓଡ଼ିଆ ମିଶ୍ରିତ ବଙ୍ଗଳା ଭାଷାରେ କଥା କୁହନ୍ତି। ଓଡ଼ିଆ ସାମାଜିକ ରୀତିନୀତି ପାଳନ୍ତି। ଓଡ଼ିଆ ଭାଷାରେ ରଚିତ ବହୁ ସାହିତ୍ୟ ଏବେ ବଙ୍ଗ ଲିପିରେ ମୁଦ୍ରିତ ହୋଇ ସେଠାରେ ପ୍ରଚଳିତ।

ଏହି ସ୍ପଷ୍ଟ ଭୂମି ଉପରେ ମୋର ଉତ୍ତର–ପୂର୍ବ ଉପାନ୍ତ ଅଞ୍ଚଳର ଭାଷା, ସାହିତ୍ୟ ଓ ସଂସ୍କୃତି ଅଧ୍ୟୟନ କରିବା– ଅତୀତର ଗୌରବ ଦୀପ୍ତ ସାମ୍ରାଜ୍ୟର ଇତିହାସ ଓ ସଂସ୍କୃତିକୁ ବର୍ତ୍ତମାନ ସମୟରେ ଉଦ୍‌ଘାଟନ କରିବା–ଏଥିପାଇଁ ମୋ ଜନ୍ମ ମାଟିର ପ୍ରେରଣା ମୋତେ ସତତ ଅନୁସନ୍ଧାନରେ କର୍ମଚଞ୍ଚଳ କରି ଆସିଛି।

## ଉତ୍ତର–ପୂର୍ବ ଉପାନ୍ତ ଅଞ୍ଚଳରେ ଓଡ଼ିଆ ଭାଷା :

ବାଲେଶ୍ୱର ଓ ମୟୂରଭଞ୍ଜ ଜିଲ୍ଲାର ଉତ୍ତର – ପୂର୍ବାଞ୍ଚଳ ଓ ମେଦିନୀପୁର (ପ: ବଙ୍ଗର ଦକ୍ଷିଣ–ପଶ୍ଚିମାଂଶ ପରସ୍ପର ସଂଲଗ୍ନ ଅଞ୍ଚଳ, ସ୍ଥୂଳତଃ ; ବାଲେଶ୍ୱର, ବାରିପଦା ଓ ମେଦିନୀପୁର ସହର ମଧ୍ୟସ୍ଥିତ ଅଞ୍ଚଳକୁ ଓଡ଼ିଶାର ଉତ୍ତର – ପୂର୍ବାଞ୍ଚଳ ରୂପେ ଗ୍ରହଣ କରାଯାଉଛି। ଏହି ନିର୍ଦ୍ଦିଷ୍ଟ ଅଞ୍ଚଳରେ ପ୍ରଚଳିତ ଲୋକ କଥିତ ଭାଷାହିଁ ଉତ୍ତର – ପୂର୍ବାଞ୍ଚଳ ଓଡ଼ିଆ ଭାଷା ରୂପେ ପରିଗଣିତ। ଭାଷା ତାତ୍ତ୍ୱିକ ଦୃଷ୍ଟିରୁ ଭୋଗରାଇ, ବାଲିଆପାଳ, ଜଳେଶ୍ୱର (ବାଲେଶ୍ୱର ସଦର) ସୁଲିଆ, ରୁଜିଆପଦା, କୁଳିଆଣା (ବାରିପଦା ସଦର) ନୟାଗ୍ରାମ (ଝାଡ଼ଗ୍ରାମ ସବ୍‌ଡିଭିଜନ), ଦାନ୍ତନ, ମୋହନ ପୁର, ରାମ ନଗର, କାନ୍ଥୀ (ମେଦିନୀପୁର ସଦର) ଅଞ୍ଚଳରେ ପ୍ରଚଳିତ କଥିତ ଭାଷା ରୂପରେ ଅଧିକ ଘନିଷ୍ଠ ଐକ୍ୟ ରକ୍ଷିତ ହୋଇ ଥିବା ସ୍ଥଳେ ଆଧୁନିକ କାଳରେ ଶିକ୍ଷା ଓ ସଭ୍ୟତାର ପ୍ରସାର ଓ ପ୍ରଭାବ ଫଳରେ ବାଲେଶ୍ୱର, ବାରିପଦା, ମେଦିନପୁର ସହରାଞ୍ଚଳରେ ମାନବଭାଷା (ଓଡ଼ିଆ ଓ ବଙ୍ଗଳା)ର ପ୍ରଚଳନ ଅଧିକ। ଏତଦ୍ ବ୍ୟତୀତ ଏହି ଉପଭାଷା ଓଡ଼ିଶା, ପଶ୍ଚିମ ବଙ୍ଗ ସଂଲଗ୍ନ ବିହାର ସିଂହଭୂମ ସୀମାନ୍ତ ଗୋପୀ ବଲ୍ଲଭ ପୁର, ବାହାଡ଼ା ଗୋଡ଼ା (ଧଳଭୂମି), ଖଡ଼୍ଗପୁର, ଖରସୁଆଁ ଅଞ୍ଚଳରେ (କେତେକାଂଶରେ ପୂର୍ବୀ ହିନ୍ଦୀ ପ୍ରଭାବିତ) ପ୍ରଚଳିତ। ଏକ ଭାଷା କ୍ଷେତ୍ର ରୂପେ ଉତ୍ତର ପୂର୍ବାଞ୍ଚଳର ବୈଶିଷ୍ଟ୍ୟ ହେଉଛି ଯେ ଏହି ତିନି ଗୋଟି ଭାଷା – ପରିବାରର ମିଳନ କ୍ଷେତ୍ର। ଆର୍ଯ୍ୟ ଗୋଷ୍ଠୀର ତିନିଗୋଟି ପ୍ରଧାନ ଭାଷା – ଓଡ଼ିଆ, ବଙ୍ଗଳା ଓ ହିନ୍ଦୀ ବ୍ୟତୀତ ଉର୍ଦ୍ଦୁ/ହିନ୍ଦୁସ୍ଥାନୀ ଓ ପାର୍ଶୀ ପ୍ରଭୃତି ଭାଷା ପ୍ରଚଳିତ। ଆର୍ଯ୍ୟେତର ଭାଷା ଭାବେ ମୁଣ୍ଡା ଗୋଷ୍ଠୀର ସାନ୍ତାଳୀ, ହୋ, ଭୂମିଜ, ମୁଣ୍ଡାରୀ ପ୍ରଭୃତି ଭାଷା ଓ ଦ୍ରାବିଡ଼ ଗୋଷ୍ଠୀର ଓରାଓଁ, ଖଡ଼ିଆ, ଗଣ୍ଡି ପ୍ରଭୃତି ଭାଷା ପ୍ରଚଳିତ। ଏତଦ୍‌ବ୍ୟତୀତ କମାରୀ, ବାଥୁଡ଼ି, ଭୂୟାଁ ପ୍ରଭୃତି ଭାଷା ମଧ୍ୟ ଏ ଅଞ୍ଚଳରେ ପ୍ରଚଳିତ। ଉପରୋକ୍ତ ଅଞ୍ଚଳରେ ବେସରକାରୀ/ସରକାରୀ ସ୍ତରରେ ଅଫିସିଆଲ ଭାଷା ରୂପେ 'ଇଂରାଜୀ' ବ୍ୟବହୃତ ହେଉଛି।

ସାଧାରଣତଃ କୌଣସି କ୍ଷେତ୍ର ବିଶେଷରେ ଏକାଧିକ ଭାଷା ପ୍ରଚଳିତ ଥିଲେ ଭାଷାମାନଙ୍କ ମଧ୍ୟରେ ପାରସ୍ପରିକ ସଂଯୋଗ ଘଟିବାର ଅବକାଶ ଆସିବା ସଙ୍ଗେ ସଙ୍ଗେ ବିଶେଷ ଲୌକିକ ପ୍ରବୃତ୍ତି ବିକାଶ ଲାଭ କରିଥାଏ। ପୁଣି ଏହି ଭାଷାମାନଙ୍କ ମଧ୍ୟରେ ଯ... କୌଣସି ଭାଷା କୌଣସି ସ୍ତରରେ ବିଶେଷ ମର୍ଯ୍ୟାଦା ବା ପ୍ରତି... ଲାଭ କରେ ତାହାଲେ ଅନ୍ୟାନ୍ୟ ଭାଷା ସକଳ ... ଆଦର୍ଶାଭିମୁଖୀ ହୋଇ ପଡ଼ନ୍ତି (ମହାପାତ୍ର ... ଦକ୍ଷିଣାଞ୍ଚଳୀୟ ଓଡ଼ିଆ ପୃଃ ୭,୧୯୭୬) ଏହି ପରି ... ଆଲୋଚ୍ୟ ଉପାନ୍ତ ଅଞ୍ଚଳୀୟ ଉପ ଭାଷାର ଭାଷା ... ବିଶ୍ଳେଷଣ କଲେ ଏହାର "ସ୍ୱାତନ୍ତ୍ର୍ୟ ଓ ଔପଭାଷିକ ବୈଚିତ୍ର୍ୟ ମୂଳରେ କେତେକ ନିର୍ଧାର୍ଯ୍ୟ ଭାଷାତାତ୍ତ୍ୱିକ ଓ ଐତିହାସିକ କାରଣ ବିଦ୍ୟମାନ ଥିବା ବିଷୟ ଉପ ଲବ୍ଧ ହେବ।

ପନ୍ଦରଶହ ବୟାଅଶୀ ଖ୍ରୀଷ୍ଟାବ୍ଦରେ ତୋଡ଼ର ମଲ୍ଲଙ୍କ ରାଜ କାର୍ଯ୍ୟରେ ଓଡ଼ିଆ ପରିବର୍ତ୍ତେ ପାର୍ଶୀ ଭାଷା ପ୍ରଚଳିତ ହେଲା। ଷୋହଳଶହ ଏଗାର ଖ୍ରୀଷ୍ଟାବ୍ଦରେ ମରହଟ୍ଟା ଭାସ୍କର ପଣ୍ଡିତ ବଙ୍ଗ ନବାବଙ୍କଠାରୁ ଓଡ଼ିଶା ଶାସନଭାର ଗ୍ରହଣ କଲେ। ଷୋହଳଶହ ସ୍ତରିଶ ସାଲରେ ଇଂରେଜମାନେ ବାଲେଶ୍ୱରରେ ବାଣିଜ୍ୟ କୋଠି ସ୍ଥାପନ କଲେ। ପର୍ତ୍ତୁଗୀଜ ଓ ଓଲନ୍ଦାଜମାନେ ବାଲେଶ୍ୱର, ହିଜ୍‌ଲୀ ପ୍ରଭୃତି ସ୍ଥାନରେ ବାଣିଜ୍ୟ ବ୍ୟବସାୟରେ ଲିପ୍ତଥିଲେ। ୧୮୦୩ ସାଲରେ ଇଂରେଜମାନେ ଓଡ଼ିଶା ଅଧିକାର କଲେ ଓ ଶାସନ କାର୍ଯ୍ୟ ପରିଚାଳନା ନିମନ୍ତେ ଶିକ୍ଷିତ ବଙ୍ଗାଳୀମାନଙ୍କୁ ନିଯୁକ୍ତ କରିଥିଲେ। ପୂର୍ବତନ ମୟୂରଭଞ୍ଜ ରାଜ୍ୟର ଶାସନ ପରିଚାଳନାରେ ମଧ୍ୟ ବହୁ ସଂଖ୍ୟକ ବଙ୍ଗ ଭାଷୀ ନିଯୁକ୍ତ ହୋଇଥିଲେ। ଆଲୋଚ୍ୟ ଅଞ୍ଚଳରେ କଥିତ ଭାଷା ଉପରେ ଏ ସବୁର ପ୍ରଭାବ ପରି ଲକ୍ଷିତ ହୁଏ।

ମେଦିନୀପୁର ଜିଲ୍ଲା ବହୁ କାଳ ଧରି ବିଭିନ୍ନ ଶାସନାଧୀନ ହୋଇ ପ୍ରତିକୂଳ ପରିସ୍ଥିତି ମଧ୍ୟରେ ବଙ୍ଗାଳାରେ ରହିଥିଲେ ହେଁ ଏଠାରେ ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ ଅକ୍ଷୁର୍ଣ୍ଣ ରହିଥିଲା।

ଧଳଭୂମି ଅଞ୍ଚଳ ଆବୁଲ ଫାଜଲଙ୍କ "ଆଇନ୍–ଇ– ଆକବରୀ"ରେ ଲିଖିତ ଜଳେଶ୍ୱର ସରକାରର ଅନ୍ତର୍ଭୁକ୍ତ ଥିଲା। ୧୭୫୧ ଖ୍ରୀଷ୍ଟାବ୍ଦରେ ବଙ୍ଗାଳାର ନବାବ ଆଲିବର୍ଦ୍ଦି ଖାଁ ନାଗପୁର ମରହଟ୍ଟା ଶାସକଙ୍କୁ ଏକ ଚୁକ୍ତିରେ ଓଡ଼ିଶାର ଧଳଭୂମି ଓ ମେଦିନୀପୁର ଅଞ୍ଚଳ ବ୍ୟତୀତ କେତେକାଂଶ ନିଜ ଅଧିକାରରୁ ଛାଡ଼ି ଦେଇଥିଲେ। ୧୭୬୫ ଖ୍ରୀଷ୍ଟାବ୍ଦରେ କ୍ଲାଇଭ୍ ଦିଲ୍ଲୀ ବାଦଶାହ ପକ୍ଷରୁ ବଙ୍ଗ ବିହାର ଓଡ଼ିଶାର ଦେୱାନୀ ପ୍ରାପ୍ତି ବେଳେ ଓଡ଼ିଶା ରୂପ ନାରାୟଣ ନଦୀ ଓ ସୁବର୍ଣ୍ଣ ରେଖା ନଦୀର ମଧ୍ୟବର୍ତ୍ତୀ ଅଞ୍ଚଳ ଅର୍ଥାତ୍ ଧଳଭୂମି ଓ ମେଦିନୀପୁର ଅଞ୍ଚଳକୁ କେବଳ ଓଡ଼ିଶା କରାଯାଇ ଥିଲା। ୧୮୦୩ ଖ୍ରୀଷ୍ଟାବ୍ଦରେ ଇଂରେଜ ଓଡ଼ିଶା ଅଧିକାର କରିବା ପୂର୍ବରୁ ୧୭୯୩ ଖ୍ରୀଷ୍ଟାବ୍ଦରେ ପ୍ରଥମ ପ୍ରବିଧାନ (First Regulation)ରେ ଓଡ଼ିଶା ବିଷୟ ଉଲ୍ଲେଖ କରାଯାଇ ଥିବାରୁ ଧଳଭୂମି ଓ ମେଦିନୀପୁର ଅଞ୍ଚଳ ଓଡ଼ିଶାର ଅନ୍ତର୍ଭୁକ୍ତ ଥିଲା। ଏପରିକି ଏଅଞ୍ଚଳ ଇଂରେଜ ଶାସକମାନଙ୍କ ... ୧୮୦୩ ଖ୍ରୀଷ୍ଟାବ୍ଦ ପୂର୍ବରୁ ସ୍ଥାପିତ ଜଙ୍ଗଲ–ମାହାଲର ଅନ୍ତର୍ଭୁକ୍ତ ହୋଇଥିଲା। ୧୮୩୨ 'ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ମେଦିନୀପୁର ଓଡ଼ି...

ଧଳଭୂମି ସଂଯୁକ୍ତଥିଲା । ୧୮୩୩ରେ ଏହା ମାନଭୂମି ସହିତ ଧଳଭୂମି ମହକୁମା ସିଂହଭୂମ ଜିଲ୍ଲା ସହିତ ୧୮୭୬ ମସିହାରେ ଧଳଭୂମି ମହକୁମା ସିଂହଭୂମ ଜିଲ୍ଲା ସହିତ ସଂଯୁକ୍ତ ହେଲା ଓ ବର୍ତ୍ତମାନ ପର୍ଯ୍ୟନ୍ତ ଏହା ସିଂହଭୂମ ଜିଲ୍ଲାର ଏକ ମହକୁମା ରୂପେ ପରିଗଣିତ ।

ଧଳଭୂମି ଅଞ୍ଚଳର ପ୍ରଚଳିତ ଭାଷା ମୁଖ୍ୟତଃ ଓଡ଼ିଆ । ଊନବିଂଶ ଶତାବ୍ଦୀର ଶେଷ ଦଶକ ପର୍ଯ୍ୟନ୍ତ ଏଠାରେ ବିଦ୍ୟାଳୟମାନଙ୍କରେ ଓଡ଼ିଆ ଭାଷା ଶିକ୍ଷା ଦିଆଯାଉ ଥିଲା । ଏଠାକାର ଲୋକେ ଗୁଟଶାଳୀ (ପାଠଶାଳା)ରେ ଓଡ଼ିଆ ପଢୁଥିଲେ ଓ ଲେଖୁଥିଲେ । ଓଡ଼ିଆ ଭାଷାରେ କଥା ହେଉଥିଲେ । ୧୮୬୫ ଖ୍ରୀଷ୍ଟାବ୍ଦରେ ଏଠାରେ ପ୍ରଥମେ ବଙ୍ଗଳା ପାଠଶାଳା ସ୍ଥାପିତ ହୋଇଥିଲା ।

ଧଳଭୂମିର ରାଜାମାନେ ୧୮୬୩ ମସିହା ପର୍ଯ୍ୟନ୍ତ ତାଳ ପତ୍ରରେ ଓଡ଼ିଆ ଭାଷାରେ ଲିଖିତ ସନନ୍ଦ ଓ ପଟ୍ଟାପ୍ରଦାନ କରୁଥିଲେ । ପୁନିଆଁ ଦିନ ପ୍ରଥମ ରାଜସ୍ୱ ଆଦାୟ ଓଡ଼ିଆ ଅକ୍ଷରରେ "ରୋକଡ଼" ବହିରେ ଲେଖା ଯାଉଥିଲା । ଧଳଭୂମିରେ ଓଡ଼ିଆ ଦିନ ପଞ୍ଜି ଓ "ମିତାକ୍ଷରା" ହିନ୍ଦୁ ଆଇନ୍ ପ୍ରଚଳନ ଥିଲା । (ଷଡ଼ଙ୍ଗୀ ଦୀପକ କୁମାର, ଚରୈବେତି, ୧୯୮୪-୮୫)

ଉପରୋକ୍ତ ଅଞ୍ଚଳରେ ରାଜନୈତିକ ସୀମା ରେଖାର ଭୂମିକା ଭାଷାଗତ ଯୋଗା ଯୋଗ କ୍ଷେତ୍ରରେ ବିଶେଷ ପ୍ରତି ବନ୍ଧକ ସୃଷ୍ଟି କରୁନଥିଲେ ହେଁ ସୀମା ରେଖାର ଦୁଇ ପଟ ଜନ ସମାଜରେ "ଫର୍ମାଲ" ସ୍ତରରେ ପ୍ରଚଳିତମାନଙ୍କ ଭାଷାର (ମାନକ ଓଡ଼ିଆ, ମାନକ ବଙ୍ଗଳା ଓ ମାନକ ହୀନ୍ଦୀ) ପ୍ରୟୋଗ ହେତୁ କଥିତ ଭାଷା ଉପରେ ଏହାର ପ୍ରଭାବ ପଡ଼ିବା ସ୍ୱାଭାବିକ ।

## ଉତ୍ତର-ପୂର୍ବାଞ୍ଚଳୀୟ ଓଡ଼ିଆ ସାହିତ୍ୟ :

ଶହ ଶହ ବର୍ଷଧରି ଓଡ଼ିଆ ସାହିତ୍ୟର ଯେଉଁ ଅଖଣ୍ଡ ପ୍ରଭାବ ସମଗ୍ର ଉତ୍କଳ ସାମ୍ରାଜ୍ୟରେ ବିସ୍ତାରିତ ହୋଇଥିଲା, ଉତ୍ତର-ପୂର୍ବାଞ୍ଚଳ ଏଥିରୁ ମୁକ୍ତନଥିଲା । ଏ ଅଞ୍ଚଳର ପ୍ରତି ଗ୍ରାମରେ "ଭାଗବତ ଟୁଙ୍ଗୀ"ରେ ଭାଗବତ ଗୋସାଇଁ ପୂଜା ପାଉଥିଲେ । ଓଡ଼ିଆ ଭାଗବତ, ହିରିବଂଶ, ମହାଭାରତ, ରାମାୟଣ ସହିତ ରୀତି ଯୁଗୀୟ କବିମାନଙ୍କର କାବ୍ୟ ସମୂହ ନିତ୍ୟ ପଠିତ ହେଉଥିଲା । ଗୁଟଶାଳୀମାନଙ୍କରେ ଅବଧାନମାନେ ଓଡ଼ିଆ ଭାଷା, ସାହିତ୍ୟ ଓ ସଙ୍ଗୀତ ଶିକ୍ଷା ଦେଉଥିଲେ । ଆଜି ବି ଏ ଅଞ୍ଚଳର ଲୋକେ କଥା କଥାକେ ଭାଗବତରୁ ପଦ କହି ଉଦାହରଣ ଦିଅନ୍ତି । ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟ ସବୁଠି ଚର୍ଚ୍ଚା ହେଉଥିଲା । ବହୁ କବି କାବ୍ୟ, କବିତା, ଗୀତ, ଛାନ୍ଦ ଆଦିରଚନା କରିଥିଲେ । ରସ ବିନୋଦକାର ଦୀନକୃଷ୍ଣ ଦାସ ଏ ଅଞ୍ଚଳର ଶ୍ରେଷ୍ଠ କବି । ତାଙ୍କର କାବ୍ୟିକ ପ୍ରେରଣା ଓ ପ୍ରଭାବରେ ଏ ଅଞ୍ଚଳର ବହୁ ଓଡ଼ିଆ ପ୍ରାଚୀନ କାବ୍ୟ, ଚଉତିଶା ରଚିତ ହୋଇ ଥିବାର ଦେଖିବାକୁ ମିଳେ । ଏସବୁ ପ୍ରାୟ ଧର୍ମ ଭିତ୍ତିକ ରଚନା । ରାମ, ଲକ୍ଷ୍ମୀ, ଶୀତଳୀ, ଶିବ, ମନସୀ ଏବଂ ରାଧାକୃଷ୍ଣ ବିଷୟକ ବହୁ ଉତ୍କୃଷ୍ଟ ଲୌକିକ କାବ୍ୟ ଓ କୀର୍ତ୍ତନ ଏ ଅଞ୍ଚଳର କବିମାନଙ୍କ ଦ୍ୱାରା ରଚିତ ।

ଆଲୋଚ୍ୟ ଅଞ୍ଚଳର ବହୁପ୍ରାଚୀନ ସାରସ୍ୱତ ସାଧକ ଉଭୟ ବଙ୍ଗଳା ଓ ଓଡ଼ିଆ ଭାଷାରେ ସାହିତ୍ୟ ରଚନା କରିଥିବାର ଦେଖାଯାଏ । ସଂସ୍କୃତ ଭାଷାରେ ରଚିତ ସାହିତ୍ୟ ମଧ୍ୟ ଦୃଷ୍ଟି ଗୋଚର ହୁଏ । ମୁଦ୍ରାଯନ୍ତ୍ର ଓ କାଗଜ ପ୍ରଭୃତି ପ୍ରଚଳନ ପୂର୍ବରୁ ଲେଖନ ଉପକରଣ ଭାବେ ତାଳପତ୍ର ବ୍ୟବହୃତ ହେଉଥିଲା । ଏ ଅଞ୍ଚଳରେ ଓଡ଼ିଆ ଲିପି ଓ ଭାଷା ସହିତ ଓଡ଼ିଆ ଭାଷା ଓ ବଙ୍ଗ ଲିପିରେ ଲିଖିତ ତାଳପତ୍ର ପୋଥିର ପ୍ରଚଳନଥିଲା । ଦିନୁ ଦିନ ଏସମସ୍ତ ବିନଷ୍ଟ ହେଉଅଛି ।

ସୀମା ସେପାଖ ମେଦିନୀପୁର ଜିଲ୍ଲାର ଅଧିବାସୀମାନଙ୍କ ମଧ୍ୟରେ ଓଡ଼ିଆ ସାହିତ୍ୟ ପ୍ରୀତି ଏବେ ବି ପର୍ଯ୍ୟାପ୍ତ ପରିମାଣରେ ରହି ଥିବାର ଦେଖାଯାଏ । ଅନେକ ପ୍ରାଚୀନ ଓ ଲୌକିକ ସାହିତ୍ୟ ସବୁ ବଙ୍ଗ ଲିପି (ଓଡ଼ିଆ ଭାଷା)ରେ ପ୍ରକାଶିତ ହୋଇଅଛି । ଏହିସବୁ ପୁସ୍ତକ ପ୍ରକାଶ କରିବାରେ ନୀହାର ପ୍ରେସ (କୋନ୍ଥୀ)ର ଅବଦାନ ଉଲ୍ଲେଖ ଯୋଗ୍ୟ । ଏତଦ୍‌ବ୍ୟତୀତ ଏଗ୍ରା, ମେଦିନୀପୁର, ଦାନ୍ତନ, ଜଳେଶ୍ୱର ଓ ଚନ୍ଦନେଶ୍ୱର ପ୍ରଭୃତି ସ୍ଥାନର କେତେକ ପ୍ରେସରେ ଓଡ଼ିଆ ସାହିତ୍ୟ ବଙ୍ଗ ଲିପିରେ ମୁଦ୍ରିତ ହୋଇ ପ୍ରକାଶିତ ହୋଇଅଛି । ଏପରି କେତେକ ମୁଦ୍ରିତ ପୁସ୍ତକ ସଂଗୃହୀତ ହୋଇ ନିମ୍ନରେ ତା'ର ଆଲୋଚନା କରାଯାଉଛି । ସଂଗୃହୀତ ସାହିତ୍ୟ ସବୁ ନିମ୍ନ ପର୍ଯ୍ୟାୟରେ ବିଭକ୍ତ ଯଥା – (କ) ଭକ୍ତି ସାହିତ୍ୟ (ଖ) ବ୍ୟଙ୍ଗ ଓ ହାସ୍ୟରସ (ଗ) ପାରିବାରିକ ଓ ସାମାଜିକ ପ୍ରଭୃତି । ଭକ୍ତି ସାହିତ୍ୟରେ ରାମସୀତା, ରାଧାକୃଷ୍ଣ, ଶିବ ପାର୍ବତୀ, ଲକ୍ଷ୍ମୀ, ଶୀତଳା, ଗଙ୍ଗା, ମନସା, ସତ୍ୟ ପୀର (ସତ୍ୟନାରାୟଣ), ଧର୍ମ ପ୍ରଭୃତି ଦେବ ଦେବୀମାନଙ୍କର ଶାସ୍ତ୍ରୀୟ ଓ ଲୌକିକ ମହିମା ଗାନ କରାଯାଇଅଛି । ଜନ୍ମାଷ୍ଟମୀ ବ୍ରତ କଥା, ଗଜ ସ୍ତୁତି, ହରିଣୀ ସ୍ତୁତି, ଭାଗବତ, ଟୀକା ଭାଗବତ, ସୁକ୍ଷ୍ମ ଭାଗବତ, ଜଳକେଳି ଓ ବସ୍ତ୍ରହରଣ, ଶ୍ରୀ ଶ୍ରୀ ରାଧାରାଣୀ ରୋଦନ, ଭଜନସାର, ବାମନ ଭକ୍ତ, ଦେଉଳ ତୋଳା, କାର୍ତ୍ତିକ ମହାତ୍ମ୍ୟ, ସତ୍ୟ ନାରାୟଣ ପାଲା, ତ୍ରିନାଥ ମେଳା, ପଞ୍ଚାନନ ମେଳା, ଲକ୍ଷ୍ମୀ ବ୍ରତକଥା ବା ଗୁରୁବାର ଓଷା, ଚନ୍ଦନେଶ୍ୱର ମହାତ୍ମ୍ୟ, ରାଧାଷ୍ଟମୀ ବ୍ରତ, ବ୍ରହ୍ମାଣ୍ଡ ଭୂଗୋଳ, ତୁଳାଭିଣା, ସୀତା ଶ୍ୱେରୀ, ଗଙ୍ଗା ମହାତ୍ମ୍ୟ, ଧ୍ରୁବ ଚରିତ୍ର ପ୍ରଭୃତି ରଚନା ଭକ୍ତି ସାହିତ୍ୟ ଭାବରେ ବିଶେଷ ଲୋକପ୍ରିୟ ।

ଆଧୁନିକ ଫାର୍ସ, ବିଲୁଆଟି ଡ଼ାଳ ଓ ବାଇଦଙ୍କ ଫଳ, ଦହିବାଲୀ ଗୀତ, ପହୀଚିନ୍ତା, ଟିଉସନ ମାଷ୍ଟର, ଡେଡ଼ିଆ ଡେଡ଼ିଆଣୀ (ଡେଡ଼େଙ୍ଗା ଡଡ଼େଙ୍ଗାଣୀ)ର ଝଗଡ଼ା, ଦୁଇ ସମୁଦୁଣୀ କଳି ପ୍ରଭୃତି ବ୍ୟଙ୍ଗ ଓ ହାସ୍ୟ ରସାତ୍ମକ ରଚନା ।

ନଣନ୍ଦୀ ଲାଗି ଶଳା ଭାଉଜର ବିଳାପ, ସୁଲକ୍ଷଣୀ ଝିଅ, ଆଦର୍ଶ ନାରୀ, ସୁନାଝିଅ, ଶେଷାଝିଅ, ପରଶ ମଣି, ସଖୀ ସେନାର ଗାନ, ବେହୁଲା ରୋଦନ, ଚମ୍ପାବତୀ ହରଣ, କପଟ ପାଶା, କର୍ମ ଚିନ୍ତା ଓ ସ୍ୱାମୀର ଶୋକ ପ୍ରଭୃତି ପାରିବାରିକ ଓ ସାମାଜିକ ସାହିତ୍ୟର ନିଦର୍ଶନ ।

ଏଥିରୁ ଏ ଅଞ୍ଚଳର ଅଧିବାସୀମାନଙ୍କର ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରୀତି ସ୍ପଷ୍ଟ ବୁଝାପଡ଼ିବ । ଦକ୍ଷିଣ ମେଦିନୀପୁରର ପ୍ରତି

ଘରେ ଖୋଜିଲେ ଏପରି ପୁସ୍ତକ କେତେଖଣ୍ଡ ନିଶ୍ଚୟ ମିଳିବ । ଅନେକ ଲୋକ ସାହିତ୍ୟିକ ସେମାନଙ୍କର ରଚନା ନିମନ୍ତେ ପ୍ରତିଷ୍ଠା ସହିତ ଅର୍ଥ ମଧ୍ୟ ଅର୍ଜନ କରିଛନ୍ତି ।

## ଉତ୍ତର-ପୂର୍ବାଞ୍ଚଳୀୟ ସଂସ୍କୃତି :

ଏ ଅଞ୍ଚଳରେ ବହୁ ଜାତି ଓ ଗୋଷ୍ଠୀର ଲୋକେ ବାସ କରନ୍ତି । ମୂଳ ଅଧିବାସୀ ଆଦିବାସୀ ଓ ଅଣ-ଆଦିବାସୀ ହିନ୍ଦୁମାନଙ୍କ ବ୍ୟତୀତ ମୁସଲମାନ ଓ ଖ୍ରୀଷ୍ଟଧର୍ମୀ ବଳସୀ ଲୋକେ ମଧ୍ୟ ବାସ କରନ୍ତି । ଜାତି/ଗୋଷ୍ଠୀ ବିଶେଷରେ ଚଳଣୀ ଭିନ୍ନ ପ୍ରକାର ହୋଇଥାଏ । ତଥାପି, ଏକ ସୁସ୍ଥ ସମାଜର ପୁଷ୍ଟି ଏବଂ ପରସ୍ପର ମଧ୍ୟରେ ମୈତ୍ରୀ ଓ ଭାତୃତ୍ୱ ପ୍ରତିଷ୍ଠା ନିମନ୍ତେ ବହୁ ପର୍ବ ପର୍ବାଣୀ, ଯାତ୍ରା, ମେଳାର ଆୟୋଜନ ହୋଇଥାଏ ।

ଏ ଅଞ୍ଚଳରେ ପ୍ରବାହିତ ସୁବର୍ଣ୍ଣରେଖା ନଦୀରେ ସ୍ୱର୍ଣ୍ଣରେଣୁ ମିଳେ । ଏ ସୁନା ଭୂଇଁର ଅଧିବାସୀ ବାରମାସରେ "ତେରପର୍ବ" ପାଳନ କରନ୍ତି । କେତେ ପୂଜା, ପାର୍ବଣ ବାର ବ୍ରତ, ସୁନିଆଁ ପରବରେ ଜୀବନକୁ ବିତାଇ ଦିଅନ୍ତି । ପରିବାରର ମଙ୍ଗଳ ନିମନ୍ତେ ଗୃହୀ ମାନସିକ କରେ । ଦେବ ଦେବୀଙ୍କ ପାଖରେ ହୁଡ଼ା ବାନ୍ଧେ । କାଳିଆ ବୋଦା, ନାଲି କୁକୁଡ଼ା ଯାଚେ । ବିଭିନ୍ନ ଧାତୁରେ ମୁକୁଟ ଓ ବାହାନ ବନେଇ ଦେବାର ମାନସିକ କରେ । କ୍ଷୀରୀ ଖେଚୁଡ଼ି ଭୋଗ ଦିଏ । ବାଡ଼ିରେ କଦଳୀ କାନ୍ଧିରେ ଫୁଲିମାରେ । ସତ୍ୟପୀର ପାଖରେ "ଶିରୀନୀ" ଦିଏ । ପିଲା ଜନ୍ମ ହେଲେ ଦେବ ଦେବୀଙ୍କ ସନ୍ତୁଷ୍ଟି ନିମନ୍ତେ ପୂଜା, ପଟଳ, ପାଲାର ଆୟୋଜନ କରେ । ଏହାହିଁ ନିତ୍ୟ ନୈମିତ୍ତିକ ମଙ୍ଗଳଗତ ପରମ୍ପରା । ଏଥିରେ ବ୍ୟତିକ୍ରମ ହୁଏ ନାହିଁ ।

ଏ ଅଞ୍ଚଳର ଜନ ସମାଜରେ ଦୈନନ୍ଦିନ ଜୀବନରେ ପ୍ରଚଳିତ ଜାତ ବିଧି, ବିଦ୍ୟାରମ୍ଭ, ଅଧ୍ୟୟନ ରୀତି, ବିଭାବିଧି, ମୃତ କର୍ମ, ଗୃହ ଭଳୀର ଚିତ୍ର, ପୋଷାକ ପରିଚ୍ଛଦ, ଧର୍ମ ଧାରଣା, ସଂସ୍କାର ଦେବ ଦେବୀ, ପୂଜା ପାର୍ବଣ, ମେଳା ମଉଛବ, ପିଠାପଣା, ଭୋଗ ରାଗ ବ୍ୟବସ୍ଥା, ବାଣିଜ୍ୟ, କଳା, ସ୍ଥାପତ୍ୟ, ରୀତି ନୀତି ସଂସ୍କୃତିର ସବୁ ବିଭାବ ଓଡ଼ିଶାର ଅନ୍ୟ ଅଞ୍ଚଳ ପରି ଚଳି ଆସୁଛି ।

ସମସ୍ତ ଅଞ୍ଚଳରେ ପୂଜାର୍ଚ୍ଚନା କାଳରେ ବ୍ରାହ୍ମଣ ମନ୍ତ୍ର ପାଠ କଲାବେଳେ "ଉତ୍କଳ ଦେଶେ" (ଅଦ୍ୟ ପୃଥିବ୍ୟାଂଜମ୍ବୁ ଦ୍ୱୀପେ ଭାରତ ଭୂଖଣ୍ଡେ ଉତ୍କଳ ଦେଶେ ଇତ୍ୟାଦି) ପଦ ଉଚ୍ଚାରଣ କରିଥାନ୍ତି । (ସାମ୍ପ୍ରତିକ କାଳରେ ଅନେକ ସ୍ଥାନରେ "ଉତ୍କଳ ଦେଶେ" ପଦ ଉଚ୍ଚାରିତ ହେଉ ନାହିଁ ।) ଏତଦ୍‌ବ୍ୟତୀତ ଏ ଅଞ୍ଚଳରେ ପ୍ରଚଳିତ କେତେକ ବିଶେଷ ବିଧି ଉଲ୍ଲେଖ କରାଯାଉଛି ।

## ସୁନିଆଁ-ନବ ବର୍ଷ ଆରମ୍ଭ :

ଭାଦ୍ରମାସର ଶୁକ୍ଳପକ୍ଷ ଇନ୍ଦ୍ର ଦ୍ୱାଦଶୀ ତିଥିରେ ଓଡ଼ିଆମାନଙ୍କର ନବ ବର୍ଷର ଆରମ୍ଭ ହୋଇଥାଏ । ପ୍ରାଚୀନ କାଳରେ ଏହି ପର୍ବ ସମସ୍ତ ଉତ୍କଳରେ ଆଡ଼ମ୍ବର ସହକାରେ ପାଳିତ ହେଉଥିଲା । ପ୍ରଜାମାନଙ୍କର ଶୁଭ କାମନାରେ ରାଜାମାନେ ଖମ୍ବ ପୋତି ଉଚ୍ଚ ମଣ୍ଡପ ନିର୍ମାଣ କରି ସେଥିରେ 'ଇନ୍ଦ୍ରଧ୍ୱଜ' ସ୍ଥାପନ ପୂର୍ବକ ତାଙ୍କର ପୂଜା କରିଥାନ୍ତି । ଏହି ପର୍ବ ସୁନିଆଁ ନାମରେ ପ୍ରସିଦ୍ଧ । ଏ ଦିନ ରାଜାମାନଙ୍କୁ ପ୍ରଜାମାନେ ଭେଟି ଦେବାର ପ୍ରଥା ସର୍ବତ୍ର ପ୍ରଚଳିତ ଥିଲା । ଉପାନ୍ତ ଅଞ୍ଚଳରେ ମଧ୍ୟ ଏହା ପାଳିତ ହେଉଥିଲା । "ସୁନିଆଁଭେଟି" ପ୍ରଥା ଆଧୁନିକ କାଳରେ ଲୋପ ପାଇ ଥିଲେ ଖ ଅମଳି ସନ ଭାବରେ ଏହାର ପ୍ରଚଳନ ରହିଅଛି । ସରକାରୀ କାଗଜ ପତ୍ରରେ ଖ୍ରୀଷ୍ଟିୟାନ ମସିହାର ପ୍ରଚଳନ ଥିଲେ ହେଁ କୋଷ୍ଠୀ ଓ ପାଞ୍ଜି ପ୍ରଭୃତିରେ "ସୁନିଆଁ" ସାଲ ବ୍ୟବହୃତ ହୋଇଥାଏ । ଏହି ପ୍ରଥା ଅତି ପ୍ରାଚୀନ । ଉତ୍ତର ପୂର୍ବାଞ୍ଚଳରେ ସୁନିଆଁ ତା'ର ନିଜର ବୈଶିଷ୍ଟ ରକ୍ଷା କରି ବର୍ତ୍ତମାନ ମଧ୍ୟ ପ୍ରଚଳିତ ରହିଅଛି ।

## ଜମି ଜମା ମାପ :

ଗଜପତିମାନଙ୍କ ସମୟରୁ ଜମି ଜମା ମାପ ସମ୍ବନ୍ଧୀୟ ରୀତି ଯଥା :- ମାଣ, ଗୁଣ୍ଠ, ବିଶ୍ୱା ପ୍ରଭୃତି ସମଗ୍ର ଓଡ଼ିଶାରେ ପ୍ରଚଳିତ । ବଙ୍ଗଳାରେ, ବିଘା, କାଠା ଇତ୍ୟାଦି ପ୍ରଚଳିତ । ସୀମାନ୍ତ ମେଦିନୀପୁର ଅଞ୍ଚଳର ଓଡ଼ିଶୀ ରୀତିରେ ବିଷୟ ସମ୍ପତ୍ତି ମାପ ପ୍ରଚଳିତ । ଧାନ ପ୍ରଭୃତି ଉତ୍ପାଦିତ ଶସ୍ୟ ପ୍ରଭୃତିର ପରିମାଣ ରୀତି ଯଥା :- ଅଢ଼ା, କୁଞ୍ଚି, ସେର, ମହଣ ପ୍ରଭୃତି ରୀତି ପ୍ରଚଳିତ ।

## ପୋଥି ବସା :

ଉତ୍ତର ବାଲେଶ୍ୱର ଓ ଦକ୍ଷିଣ ମେଦିନୀ ପୁରର ଗ୍ରାମାଞ୍ଚଳରେ 'ପୋଥିବସା' ଏକ ବହୁ ପ୍ରଚଳିତ ରୀତି । ବୈଶାଖ, କାର୍ତ୍ତିକ ଓ ମାଘ ମାସରେ ଗ୍ରାମାଞ୍ଚଳର ଧର୍ମ ପିପାସୁ ଜନ ସାଧାରଣ ଏହି ଅନୁଷ୍ଠାନ ପାଳନ କରନ୍ତି । ଜଗନ୍ନାଥ ଦାସଙ୍କ ଓଡ଼ିଆ 'ଭାଗବତ' ଏଥିରେ ପଠନହୁଏ । ତାଳ ପତ୍ରରେ ଲିଖିତ ପୋଥି ଗୋଟିଏ ପୂଜିତ ହୁଅନ୍ତି । ଏହା ସପ୍ତାହ, ପକ୍ଷ, ମାସ ପର୍ଯ୍ୟନ୍ତ ଅନୁଷ୍ଠିତ ହୁଏ । ଏଥିରେ ଶ୍ରୋତା ଓ ବକ୍ତା ରହିଥାନ୍ତି । ପୋଥି ବସାରେ ଧର୍ମ ପିପାସୁ ନରନାରୀ ଗଣ ଧର୍ମାର୍ଜ୍ଜନ କରିବା ସହିତ ନିଜକୁ ସତ୍ୟ ପଥରେ ପରିଚାଳିତ କରନ୍ତି ।

## ରାଣୀ ହାଟି ସଂକୀର୍ତ୍ତନ :

ଓଡ଼ିଶାର ଗାଁ ଗହଳରେ ଦୋଳ ପୂର୍ଣ୍ଣିମୀ, ଠାକୁର ମେଳଣ ଯାନି ଯାତ୍ରାମାନଙ୍କରେ ଯେଉଁ ଓଡ଼ିଶୀ କୀର୍ତ୍ତନ ପ୍ରଚଳିତ ଅଛି, ତାର ପ୍ରବର୍ତ୍ତକ ହେଉଛନ୍ତି ଆଚାର୍ଯ୍ୟ ଶ୍ୟାମାନନ୍ଦ । ସର୍ବ ଅଗ୍ରଣୀ ଶ୍ରୀନିବାସ, ନରୋତ୍ତମ ଓ ଶ୍ୟାମାନନ୍ଦ-ତିନି ଜଣ ଶ୍ରୀ ଗୌରାଙ୍ଗ ମହାପ୍ରଭୁ ପ୍ରବର୍ତ୍ତିତ ପ୍ରେମ ଧର୍ମ ପ୍ରଚାରକ ରୂପେ ତିନୋଟି କୀର୍ତ୍ତନ ପଦ୍ଧତି-ସ୍ୱର, ସଙ୍ଗୀତ, ତାଳମାନ ଆଦି ପ୍ରବର୍ତ୍ତନ କରିଥିଲେ । ଆଚାର୍ଯ୍ୟ ଶ୍ରୀନିବାସ "ମନହର ସାହୀ" (ଗୌଡ଼ଦେଶୀ), ଆଚାର୍ଯ୍ୟ ନରୋତ୍ତମ "ଗଡ଼େର ହାଟି" (ରାଢ଼ ଦେଶୀ) ଓ ଆଚାର୍ଯ୍ୟ ଶ୍ୟାମାନନ୍ଦଙ୍କ ପ୍ରବର୍ତ୍ତିତ କୀର୍ତ୍ତନ ପଦ୍ଧତି "ରାଣୀହାଟି" (ଓଡ଼ିଶୀ) ରୂପେ ଖ୍ୟାତ ।

## ମିତାକ୍ଷରା :

ହିନ୍ଦୁ ସମ୍ପତ୍ତି ଭାଗ ବଣ୍ଟନ ପ୍ରଥା ବଙ୍ଗଳାରେ "ଦାୟଭାଗ" ଓଡ଼ିଶାରେ "ମିତାକ୍ଷରା" ରୂପେ ପ୍ରଚଳିତ । ମିତାକ୍ଷରା ପଦ୍ଧତି

ସମଗ୍ର ଉତ୍ତର-ପୂର୍ବାଞ୍ଚଳରେ ପ୍ରଚଳିତ ରହିଅଛି । ପରିବାରରେ ଜ୍ୟେଷ୍ଠ ପୁତ୍ର 'ଶ୍ରେଷ୍ଠାଂଶ'ର ଅଧିକାରୀ । ମିତାକ୍ଷରା ପ୍ରଥାନୁଯାୟୀ ସମ୍ପତ୍ତିରେ କନ୍ୟାର ଅଂଶ ନଥାଏ ।

**ଉଚ୍ଚାରଣ ପଦ୍ଧତି : 'ଳ' ଉଚ୍ଚାରଣ :**

ଓଡ଼ିଆ ଭାଷାରେ 'ଳ' ଓ 'ଲ' ଦୁଇଟି ସ୍ୱତନ୍ତ୍ର ଅକ୍ଷର ପ୍ରଚଳିତ ରହିଅଛି । ଏହା ଓଡ଼ିଆ ଭାଷାର ପ୍ରାଚୀନତାର ନିଦର୍ଶନ । ବଙ୍ଗଳା ଭାଷାରେ 'ଳ' ଲିପି ନାହିଁ । କିନ୍ତୁ ମେଦିନୀପୁର ବାସୀଗଣ 'ଳ' ଓ 'ଲ' ଉଭୟ ସ୍ପଷ୍ଟ ଉଚ୍ଚାରଣ କରିଥାନ୍ତି ।

**ଖଣ୍ଡ (ତ) କାର :**

ଖଣ୍ଡ (ତ) କାର ଯୁକ୍ତ ଦନ୍ତ୍ୟସ୍ୱବତ୍ କାର ବର୍ଣ୍ଣକୁ ଓଡ଼ିଆମାନେ 'ହ' ବର୍ଣ୍ଣପରି ଉଚ୍ଚାରଣ କରିଥାନ୍ତି । ଯଥା—ମହୋତ୍ସବ—ମଉଛବ, ଛେଦ—ଛେଦ୍ ଇତ୍ୟାଦି । ସମଗ୍ର ମେଦିନୀପୁରବାସୀ ପ୍ରାଚୀନ ପଣ୍ଡିତ ଓ ବୃଦ୍ଧମାନଙ୍କ ମୁଖରୁ ଏପରି ଉଚ୍ଚାରଣ ଶୁଣାଯାଇ ଥାଏ ।

**ନାଁ ବଦଳେଇବା :**

ଘରର ସ୍ତ୍ରୀ ଲୋକେ ସାଧାରଣତଃ ବୋହୂମାନେ ଶ୍ୱଶୁର, ଶାଶୁ, ଗୋସେଇଁ ଶ୍ୱଶୁର, ଗୋସେଇଁ ଶାଶୁ, ଦେଢ଼ଶୁର, ଦେଢ଼ଶାଶୁ ଓ ସ୍ୱାମୀ ପ୍ରଭୃତିମାନଙ୍କର ନାମ ଧରି ଡାକନ୍ତି ନାହିଁ । ସେମାନଙ୍କ ନାମ ଧରିବା କିମ୍ବା ନାମର ଆଦ୍ୟ ଅକ୍ଷର ବ୍ୟବହୃତ କୌଣସି ବସ୍ତୁ, ପଦାର୍ଥ, ଜୀବଜନ୍ତୁ ପ୍ରଭୃତିର) ନାମ ଉଚ୍ଚାରଣ କରିବା ଅକର୍ତ୍ତବ୍ୟ ରୂପେ ବିବେଚିତ ହୁଏ । ତେଣୁ କୌଣସି ପରିସ୍ଥିତିରେ ସେସବୁ ନାମକୁ ସାଙ୍କେତିକ ଭାଷରେ କହିବା ବିଧି । ଶାଶୁଙ୍କର ନାମ କୌଶଲ୍ୟା ହେଲେ ବୋହୂ ତାଙ୍କ ନାମ ନଧରି ସାଙ୍କେତିକ ଭାଷାରେ ପ୍ରକାଶ କରିବା ସଙ୍ଗେ ସଙ୍ଗେ 'କ' ଅକ୍ଷରରେ ଆରମ୍ଭ ଅନ୍ୟ କୋଣସି ପଦାର୍ଥ କିମ୍ବା ଜୀବର ନାମକୁ ଭିନ୍ନ ରୂପେ ପ୍ରକାଶ କରିବା ଯଥା—ମାଛର ନାମ 'କଉ' କହିବାକୁ ହେଲେ 'ନଉ' ବୋଲି ଉଚ୍ଚାରଣ କରିବେ । ଦକ୍ଷିଣ ମେଦିନୀପୁର ଉତ୍ତର ବାଲେଶ୍ୱର ଅଞ୍ଚଳରେ ଏ ପ୍ରଥା ବହୁଳ ପ୍ରଚଳିତ ।

**ମାଉଳୀ ପ୍ରଥା :**

ଓଡ଼ିଶାରେ କରଣମାନେ ବ୍ରାତ୍ୟ କ୍ଷତ୍ରିୟ। ଖଣ୍ଡାୟତ ଓ ରାଜୁମାନେ ଉଗ୍ର କ୍ଷତ୍ରିୟ । ଏ ତିନି ଜାତିଙ୍କ ମଧ୍ୟରେ କେତେକ ସ୍ଥାନରେ 'ମାଉଳୀ ପ୍ରଥା' ରୂପେ ଯେଉଁ ନବ ସଂସ୍କାର କର୍ମ ରହି ଅଛି ତାହା ବେଦ ବିହିତ କ୍ରିୟାନୁଷ୍ଠାନ । ସମଗ୍ର ଉତ୍ତର-ପୂର୍ବାଞ୍ଚଳରେ ଏଥିର ପ୍ରଚଳନ ରହିଅଛି ।

**ଭାଷା, ସାହିତ୍ୟ ଓ ସଂସ୍କୃତିର ସମନ୍ୱୟ :**

ମେଦିନୀପୁର ଅଞ୍ଚଳ ରାଜନୀତିକ କାରଣରୁ ପଶ୍ଚିମ ବଙ୍ଗଳାର ଅନ୍ତର୍ଭୁକ୍ତ ହୋଇ ଅଛି । ଏଠାରେ ୧୯୩୬ ମସିହାପରଠାରୁ ଓଡ଼ିଆ ଭାଷା ଶିକ୍ଷାର ପ୍ରଚଳନ ନାହିଁ । ବିଦ୍ୟାଳୟମାନଙ୍କରେ ବଙ୍ଗଳା ଭାଷା ଶିକ୍ଷା ବ୍ୟବସ୍ଥା ପ୍ରଚଳିତ । ଓଡ଼ିଆ ଭାଷା କ୍ରମେ ସଙ୍କୁଚିତ ହୋଇଛି, ହେଉଛିବି । କେବଳ ଘରୋଇ ସ୍ତରରେ ପ୍ରଚଳିତ ଉପଭାଷାରେ ଉପଯୋଗ ହେଉଅଛି । ଉଦାହରଣ ସ୍ୱରୂପ—ଗ୍ରାମାଞ୍ଚଳର ପ୍ରାଥମିକ ବିଦ୍ୟାଳୟମାନଙ୍କରେ ଲେଖା ପଢ଼ା କାର୍ଯ୍ୟମାନ ବଙ୍ଗଳା ଭାଷାରେ ଅନୁଷ୍ଠିତ ହେଉଥିବା ବେଳେ ମୌଖିକ ପ୍ରଶ୍ନ ଉତ୍ତର, ସରଳାର୍ଥ, କଥାବାର୍ତ୍ତା ପ୍ରଚଳିତ ଓଡ଼ିଆ ଭାଷାରେ ସମ୍ପନ୍ନ ହେଉଥିଲା, କେତେକ କ୍ଷେତ୍ରରେ ଏବେ ବି ହେଉଅଛି । ସେହିପରି—ଶାନ୍ତି ଶୃଙ୍ଖଳା ରକ୍ଷା ଦାୟିତ୍ୱରେ ରହିଥିବା ପୋଲିସ୍ କର୍ମଚାରୀ କୌଣସି ଘଟଣାରେ କେସ୍ ଏଫ୍: ଆଇ: ଆର୍: ନେଲା ବେଳେ ମାନକ ବଙ୍ଗଳା ଭାଷା ବ୍ୟବହାର କରୁଥିବା ବେଳେ ଦୋଷୀକୁ ପଚରା ପଚରି କରିବା, ଘଟଣାର ତଦନ୍ତ ପାଇଁ ଗ୍ରାମାଞ୍ଚଳକୁ ଯାଇ ଅନୁସନ୍ଧାନ କରିବା କାଳରେ କଥାବାର୍ତ୍ତା କାର୍ଯ୍ୟ ପ୍ରଚଳିତ ଉପ ଭାଷାରେ ସମ୍ପନ୍ନ କରୁଅଛନ୍ତି । ଆନୁଷ୍ଠାନିକ, ସାମାଜିକ ଓ ପାରିବାରିକ ସ୍ତରରେ ଏପରି କାର୍ଯ୍ୟ ଅନୁଷ୍ଠିତ ହେଉ ଥିଲେ ହେଁ, ବଙ୍ଗଳା ଭାଷାରେ ପ୍ରୟୋଗ କ୍ରମେ ବୃଦ୍ଧି ଘଟିବା ସ୍ୱାଭାବିକ । ମେଦିନୀପୁର ଅଞ୍ଚଳ ସହିତ ବାଲେଶ୍ୱର-ମୟୂର ଭଞ୍ଜର ସନ୍ନିହିତ ସଂଲଗ୍ନ ଅଞ୍ଚଳର ଅଧିବାସୀଗଣ ସବୁ ସମୟ ପାଇଁ ଭାଷା ଓ ସଂସ୍କୃତି କ୍ଷେତ୍ରରେ ସମନ୍ୱୟ ମାଧ୍ୟମରେ ହିଁ ସମସ୍ତ କାର୍ଯ୍ୟ ସମ୍ପାଦନ କରି ପାରୁଛନ୍ତି ଓ ଭବିଷ୍ୟତରେ ମଧ୍ୟ ଏପରି ଘଟିବ—ଏହା ଅପରିହାର୍ଯ୍ୟ । ଏହି ପରିପ୍ରେକ୍ଷୀରେ ହଣ୍ଟର ସାହେବଙ୍କର ଉକ୍ତିଟିଏ ପ୍ରଣିଧାନ ଯୋଗ୍ୟ । ସେ ତାଙ୍କ ଷ୍ଟାଟିଷ୍ଟିକାଲ ଏକାଉଣ୍ଟ ଅଫ୍ ବେଙ୍ଗଲ (ଭଲ୍ୟୁମ୍ ଥାର୍ଡ) ପୁସ୍ତକରେ ଉପଯୁକ୍ତ କଥାଟିଏ ଲେଖିଛନ୍ତି । ତାଙ୍କର ଉକ୍ତିଟି ହେଉଛି, ''Medinpur being an inter-mediate district between Bengal and Orissa, the population possess charactaristic common to the people of the both provinces'' ସାହିତ୍ୟ କ୍ଷେତ୍ରରେ ଯେପରି ପ୍ରଚଳିତ ଓଡ଼ିଆ ସାହିତ୍ୟ ବଂଗ ଲିପିରେ ମୁଦ୍ରିତ ହୋଇ ପ୍ରକାଶିତ ଓ ବହୁଳ ପ୍ରଚଳିତ, ଆଞ୍ଚଳିକ ଜନସାଧାରଣଙ୍କର ଓଡ଼ିଆ ସାହିତ୍ୟ ପ୍ରତି ପ୍ରୀତି-ପୂର୍ଣ୍ଣ ମାନସିକତା ଏପରି ଭାବରେ ବିକଶିତ ହୋଇଛି । ଏ ସବୁକୁ ସମ୍ପ୍ରତଃ କୌଣସି ସରକାରୀ ନୀତି ଅବଦମିତ କରିପାରିବା—ଏକ ଅସ୍ୱାଭାବିକ କାର୍ଯ୍ୟ ।

**ଉପସଂହାର :**

ସମୟୋପଯୋଗୀ ପଦକ୍ଷେପ ଗ୍ରହଣ କରିବାରେ ଅତୀତରେ ଓଡ଼ିଶାର ନେତୃତ୍ୱର ଅକ୍ଷମତା ହେତୁ ମେଦିନୀପୁର ପରି ଅନ୍ୟ ସମସ୍ତ ବିଚ୍ଛିନ୍ନାଞ୍ଚଳ ଓଡ଼ିଶାର ମୂଳ ଭୂଖଣ୍ଡରୁ ବାଦ ପଡ଼ିଯାଇଛନ୍ତି । ଅନ୍ୟ ଉପାନ୍ତ ଅଞ୍ଚଳଗୁଡ଼ିକର ଅବସ୍ଥା ମେଦିନୀପୁର ପରି ହେବା ପୂର୍ବରୁ ଓଡ଼ିଶାରେ ସରକାରୀ ଓ ବେସରକାରୀ ସ୍ତରରେ ଏଥି ପାଇଁ ସୁଚିନ୍ତିତ ପଦକ୍ଷେପ ଗ୍ରହଣ କରି ପାରିଲେ ଯାଇ ହେବ । ଉତ୍କଳ ସମ୍ମିଳନୀ, ନୀଳଶୈଳ ପରି କେତେ ଗୋଟି ବେସରକାରୀ ସଂସ୍ଥା ବିଚ୍ଛିନ୍ନାଞ୍ଚଳ ମାନଙ୍କରେ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତି ସମ୍ପର୍କରେ ଅନେକ ଉତ୍ସାହ ଜନକ ଓ ଉଲ୍ଲେଖନୀୟ କାର୍ଯ୍ୟ ପନ୍ଥା ଗ୍ରହଣ କରି ଆସୁ ଅଛନ୍ତି । ସେମାନଙ୍କର କାର୍ଯ୍ୟ ପ୍ରଶଂସାର ଯୋଗ୍ୟ ହେଲେ ହେଁ ସରକାରୀ ସ୍ତରରେ ଏଥିପାଇଁ ଫଳ ପ୍ରଦ ଯୋଜନା ପ୍ରୟୋଜନ । ସମ୍ପ୍ରତଃ, ସଫଳର ଅଭାବ, ରାଜନୀତିକ ନେତୃମଣ୍ଡଳୀଙ୍କର ସମୟୋପଯୋଗୀ ପଦକ୍ଷେପ

ଗ୍ରହଣରେ ଅନାଗ୍ରହ-ଏସବୁ ଦିଗରେ ଅଗ୍ରସର ହେବାରେ ବାଧାସୃଷ୍ଟି କରୁଛି ।

୧୯୩୬ ମସିହାରେ ଗଠିତ ଓଡ଼ିଶା ପ୍ରଦେଶ ବାହାରେ ରହିଥିବା ଅଞ୍ଚଳଗୁଡ଼ିକର ଶାସନ କରୁଥିବା ରାଜ୍ୟ ସରକାର ମାନଙ୍କର ସଂଖ୍ୟା ଲଘୁ ଭାଷାଗୁଡ଼ିକର ସୁରକ୍ଷା ପ୍ରତି ଦୃଷ୍ଟି ନଥିବା ହେତୁ ଓଡ଼ିଆମାନେ ଆଞ୍ଚଳିକ ଭାଷାରେ ଶିକ୍ଷା ପାଉଛନ୍ତି ଓ ତଳ ପ୍ରଚଳ ହେବାକୁ ବାଧ ହୋଉଛନ୍ତି । ମେଦିନୀପୁର ଜିଲ୍ଲାରେ ବଙ୍ଗଳା ଭାଷା, ଶ୍ରୀକାକୁଲମ୍, ବିଜୟ ନଗର ଓ ବିଶାଖା ପାଟଣା ଜିଲ୍ଲାମାନଙ୍କରେ ତେଲୁଗୁ ଭାଷା, ସିଂହଭୂମି ଓ ରାଯପୁର ଏବଂ ବସ୍ତର ଜିଲ୍ଲାଗୁଡ଼ିକରେ ହିନ୍ଦୀ ଭାଷା ମାଧ୍ୟମରେ ସେଠାକାର ସଂଖ୍ୟା ଲଘୁ ଓଡ଼ିଆ ଅଧିବାସୀମାନେ ନିଜର ସମସ୍ତ କାର୍ଯ୍ୟକ୍ରମ ପରିଚାଳନା କରିଛନ୍ତି ଓ କରୁଅଛନ୍ତି । ଓଡ଼ିଆ ଭାଷା କ୍ରମଶଃ ଦୁର୍ବଳ ହୋଇ ଅନେକ ସ୍ଥାନରେ ଲୋପ ପାଉଛି, କେତେକ ସ୍ଥାନରେ ଲୋପ ପାଇ ଆସୁଛି ଓ ଆଉ କେତେକ ସ୍ଥାନରେ ବହୁ ବିଧ ସଂଗ୍ରାମ କରି କେବଳ ନିଜର ସତ୍ତା ବଞ୍ଚାଇ ରଖି ପାରିଛି । ଏହି ପରିପ୍ରେକ୍ଷୀରେ ଉତ୍ତର ପୂର୍ବ ଉପାନ୍ତ ଅଞ୍ଚଳରେ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ରୂପ ରେଖା ସମ୍ପର୍କରେ ପ୍ରସ୍ତୁତ ନିବନ୍ଧରେ ଆଲୋକପାତ କରାଯାଇଛି । ଓଡ଼ିଶାର ଅନ୍ୟସମସ୍ତ ଉପାନ୍ତ ଅଞ୍ଚଳମାନଙ୍କରେ ଏପରି କାର୍ଯ୍ୟକ୍ରମ ହାତକୁ ନେଇ ଯୋଜନା ବଦ୍ଧ ଭାବରେ ସେ ସବୁ ସ୍ଥାନର ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତି ସମ୍ପର୍କରେ ଅଧ୍ୟୟନ ସମ୍ପନ୍ନ ହେବା ଆବଶ୍ୟକ । ଏତଦ୍‌ବ୍ୟତୀତ, ବାଲେଶ୍ୱର, ବାରିପଦା ଓ ମେଦିନୀପୁର ସହର ମଧ୍ୟବର୍ତ୍ତୀ ସ୍ଥାନରେ ସରକାରୀ/ବେସରକାରୀ ସାହାଯ୍ୟ ଓ ସହଯୋଗରେ ଏକ ସାଂସ୍କୃତିକ ଅନୁଷ୍ଠାନସଂଗ୍ରହ ଶାଳା ଓ ଗବେଷଣା କେନ୍ଦ୍ର ପ୍ରତିଷ୍ଠା କରିବା ଯେଉଁଠି ଉପାନ୍ତ ଅଞ୍ଚଳର ବରେଣ୍ୟ ସାହିତ୍ୟ ସାଧକମାନଙ୍କର ପୁସ୍ତକ ପାଣ୍ଡୁଲିପି ଓ ପ୍ରୟୋଜନୀୟ ବ୍ୟବହାର୍ଯ୍ୟ ସାମଗ୍ରୀ ସହ ଲୋକ ସାହିତ୍ୟ ସଂଗ୍ରହ, ଗବେଷଣା ଓ ପ୍ରକାଶନ କାର୍ଯ୍ୟ ସମ୍ପାଦନ, ତାଳପତ୍ର ପୋଥି, ବିଗ୍ରହ, ସନନ୍ଦ ପ୍ରଭୃତି ସଂଗୃହୀତ ଓ ସଂରକ୍ଷିତ ହୋଇ ପାରିବ ଏବଂ ପର ବର୍ତ୍ତୀ କାଳରେ ଅନ୍ୟ ସମସ୍ତ ଉପାନ୍ତ ଅଞ୍ଚଳମାନଙ୍କରେ ଏପରି ସାଂସ୍କୃତିକ କେନ୍ଦ୍ରମାନ ମଧ୍ୟ ଗଠନ ହୋଇ ପାରିବ ।

---

*ଓଡ଼ିଶା ସାହିତ୍ୟ ଏକାଡ଼େମୀ ପ୍ରଦତ୍ତ "ଗୋପବନ୍ଧୁ ଗବେଷଣା ବୃତ୍ତି" ଅଧୀନରେ ପ୍ରସ୍ତୁତ ନିବନ୍ଧ "ଉପାନ୍ତ ଅଞ୍ଚଳ (ଓଡ଼ିଶାର ଉତ୍ତର-ପୂର୍ବାଞ୍ଚଳ)ରେ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତି" ଅନୁସରଣରେ ଲିଖିତ ।

ଅଧ୍ୟାପକ,
ପଞ୍ଚାୟତ ସମିତି ମହାବିଦ୍ୟାଳୟ,
ଧନମପୁରା, ଶୁଳିଆପଦା,
ଜି: ମୟୂରଭଞ୍ଜ ।




ଭୁବନେଶ୍ୱରଠାରେ କୃଷି ଯନ୍ତ୍ରପାତି ପ୍ରଚଳନର ଲୋକପ୍ରିୟତା ଉପରେ ଆୟୋଜିତ ଏକ କର୍ମଶାଳାରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଉଦ୍‌ବୋଧନ ଦେଉଛନ୍ତି ।

# ହନୁମାନ ଉବାଚ

ସୋମା ଚନ୍ଦ୍

ପୃଥିବୀରେ ପ୍ରଭୁଭକ୍ତ ମାନଙ୍କର
ଲେଖା ହେଲେ ପୂର୍ଣ୍ଣାଙ୍ଗ ତାଲିକା
ପ୍ରଭୁଭକ୍ତି ସମ୍ମାନର
ଦିଆ ହୁଏ ପୂର୍ଣ୍ଣ ପରିଚୟ
ମୁଁ ଜାଣେ, ମୁଁ ଏକକ
ମୁଁ ପୂର୍ଣ୍ଣାଙ୍ଗ ପ୍ରାତଃ ସ୍ମରଣୀୟ ।

ଇତିହାସ ପ୍ରାରମ୍ଭରେ
ନାହିଁ ନାହିଁ ମୋର ପରିଚୟ
କେବଳ ତ୍ରେତୟା ଯୁଗେ
ପରିଚୟ ଥିଲା ମୋର
ରାମ ଭକ୍ତ ହନୁମାନ ନାମେ ।

ମୋର ଯେତେ ଚିନ୍ତା ଓ ଚେତନା
ସମର୍ପିତ ପ୍ରଭୁଙ୍କର ନାମେ
ମୋର ପ୍ରଭୁ ଅନ୍ତରାତ୍ମା
ମୋର ପ୍ରତି ନିଃଶ୍ୱାସର ଉତ୍ସ
ମୋ କାର୍ଯ୍ୟର ନିଛକ ପ୍ରକାଶ ।

ପଶୁ ମୁଁ, ପଶୁତ୍ୱକୁ କରି ଆବରଣ
ସ୍ୱପ୍ନ ଦେଖେ ଦେବତ୍ୱର
କେବଳ ଏତିକି ବୁଝେ
ସମର୍ପଣ ଜୀବନର ଏକମାତ୍ର ପଣ ।

ଆକାଶ, ବତାସ, ନଦୀ, ସମୁଦ୍ର, ପର୍ବତ
ମୋ ପ୍ରଭୁଙ୍କ ଆଦେଶରେ
ଲଙ୍ଘିଯିବି ଆଖି ପିଛୁଳାକେ
ସବୁ ବି ସମ୍ଭବ ହୁଏ ପ୍ରଭୁ ଆଶୀର୍ବାଦେ ।

କିଏ ବୁଝେ ମୋ ମର୍ମ ବେଦନା,
ଲୋଡ଼ା ନାହିଁ ନାମ, ପ୍ରତିପତ୍ତି
ଅବା ସିଂହାସନ, ଥରେ ଯଦି
ମୋତେ କେହି କରଇ ସ୍ମରଣ
ପ୍ରଭୁଭକ୍ତ ରୂପେ,
ତାହାହିଁ ତ ମୋ ପାଇଁ
ଶ୍ରେଷ୍ଠ ପୁରସ୍କାର ।

ଅଧ୍ୟାପିକା,
ଇତିହାସ ବିଭାଗ,
ଭଦ୍ରକ କଲେଜ ।

# ଉପାନ୍ତ ଅଞ୍ଚଳରେ ସାକ୍ଷରତା ସମସ୍ୟା

**ବିଜୟା ପାଢ଼ୀ**

ସାମ୍ପ୍ରତିକ ପରିସ୍ଥିତିରେ ଦେଶର ପ୍ରଗତି ଓ ବିକାଶ ପାଇଁ ଦରକାର ଥିବା ଅନେକଗୁଡ଼ିଏ କାର୍ଯ୍ୟକ୍ରମ ମଧ୍ୟରେ ଜନସାକ୍ଷରତା କାର୍ଯ୍ୟକ୍ରମର ଗୁରୁତ୍ୱ ଏଇ ମଧ୍ୟରେ ସମସ୍ତେ ପ୍ରାୟ ଅନୁଭବ କରିଛନ୍ତି । ଦେଶର ତଥା ଜାତିର ସର୍ବାଙ୍ଗୀନ ଉନ୍ନତି ପାଇଁ ଓ ନିଜର ବ୍ୟକ୍ତିଗତ ଚରିତ୍ରର ପରିବର୍ତ୍ତନ ପାଇଁ ମଧ୍ୟ ଅକ୍ଷର ପରିଚୟ ଏକାନ୍ତ ଭାବେ ଆବଶ୍ୟକ । ଏହା ଆଜି ସମାଜର ଯେ କୌଣସି ସଚେତନ ନାଗରିକ ସ୍ୱୀକାର କରିବେ । କେନ୍ଦ୍ର ସରକାର ଓ ବିଭିନ୍ନ ରାଜ୍ୟ ସରକାରଙ୍କର ମିଳିତ ସହଯୋଗରେ ଦେଶର ବିଭିନ୍ନ ସ୍ଥାନରେ ଜନସାକ୍ଷରତା କାର୍ଯ୍ୟକ୍ରମର ସଫଳ ରୂପାୟନ ପାଇଁ ବ୍ୟାପକ ପ୍ରସ୍ତୁତି ଚାଲିଛି । ଏଥିରେ ବିଭିନ୍ନ ଅଞ୍ଚଳର ନାଗରିକମାନେ ସ୍ୱେଚ୍ଛାକୃତ ଭାବରେ ଅଂଶ ଗ୍ରହଣ କରିଛନ୍ତି । ସାଧାରଣ ସଭା, ପଥପ୍ରାନ୍ତ ନାଟକ, ସାକ୍ଷରତା ଶିବିର ଇତ୍ୟାଦି ପରିଚାଳନା କରାଯିବା ଦ୍ୱାରା ସମ୍ପୃକ୍ତ ଅଞ୍ଚଳରେ ଏହା ବେଶ୍ ପ୍ରଭାବ ପକାଇଛି ଓ କେତେକ ଅଞ୍ଚଳରେ ଲକ୍ଷ୍ୟ ହାସଲ ଦିଗରେ ମଧ୍ୟ ସଫଳତା ମିଳିପାରିଛି, କିନ୍ତୁ ଉପାନ୍ତ ଅଞ୍ଚଳଗୁଡ଼ିକ ବିଶେଷ କରି ଦ୍ୱିଭାଷୀ ଓ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳଗୁଡ଼ିକରେ ଏହି କାର୍ଯ୍ୟକ୍ରମର ସଫଳ ରୂପାୟନ ଦିଗରେ ଅନେକଗୁଡ଼ିଏ ବାଧା ସୃଷ୍ଟି ହେଉଛି ; ସେଗୁଡ଼ିକର ସ୍ଥାୟୀ ସମାଧାନ ନହେଲେ ହୁଏତ ଏଇ କାର୍ଯ୍ୟକ୍ରମରୁ ଆଶାନୁରୂପ ଫଳ ମିଳିବାରେ ଆଶଙ୍କା ରହିଛି ।

ଏହିପରି ଏକ ଉପାନ୍ତ ଅଞ୍ଚଳ ହେଉଛି ଗୁଣୁପୁର ଯାହାକି ନବ ଗଠିତ ରାୟଗଡ଼ା ଜିଲ୍ଲାର ଏକ ସବ୍‌ଡିଭିଜନ । ଏହା ଗଞ୍ଜାମ ଜିଲ୍ଲାର ସୀମାଠାରୁ ବା ନବ ଗଠିତ ଗଜପତି ଜିଲ୍ଲାଠାରୁ ପ୍ରାୟ କୋଡ଼ିଏ କିଲୋମିଟର ଦୂରରେ ଅବସ୍ଥିତ । ଏହି ଅଞ୍ଚଳ ଆନ୍ଧ୍ରପ୍ରଦେଶର ନିକଟବର୍ତ୍ତୀ ହୋଇଥିବାରୁ ଏଠାରେ ବହୁତ ତେଲୁଗୁ ଭାଷୀ ଲୋକ ମଧ୍ୟ ଅଛନ୍ତି । ପାହାଡ଼ିଆ ଓ ଆଦିବାସୀ ଶ୍ରେଣୀର ଶବରା ସମ୍ପ୍ରଦାୟର ଲୋକଙ୍କ ସଂଖ୍ୟା ମଧ୍ୟ କମ୍ ନୁହେଁ । ଏହିପରି ଓଡ଼ିଆ ଆଦିବାସୀ ଓ ତେଲୁଗୁ ତିନୋଟି ସମ୍ପ୍ରଦାୟର ପ୍ରାଧାନ୍ୟ ଏଇ ଅଞ୍ଚଳରେ ରହି ଆସିଛି ।

ବିଭିନ୍ନ ଅଞ୍ଚଳ ଭଳି ଏଇ ଅଞ୍ଚଳରେ ମଧ୍ୟ ଜନଶିକ୍ଷା ସାଧନ କେନ୍ଦ୍ରମାନଙ୍କ ସହାୟତାରେ ଜନଶିକ୍ଷାକୁ ବ୍ୟାପକ କରିବା ପାଇଁ ଯୋଜନାମାନ ଚାଲୁ ରହିଛି । କିନ୍ତୁ ଏଇ କାର୍ଯ୍ୟକ୍ରମ ସପକ୍ଷରେ କିଛି କରିବାକୁ ଗଲାବେଳେ ଅଧିକାଂଶ ଇଚ୍ଛୁକ ସଚେତନ ବ୍ୟକ୍ତି ପୂର୍ଣ୍ଣମାତ୍ରାରେ ସଫଳତା ଅର୍ଜନ କରିପାରି ନାହାନ୍ତି, ଏଥି ପାଇଁ ସମସ୍ୟା ତ ଅନେକ ରହିଛି । ହେଲେ ନିମ୍ନଲିଖିତ କେତୋଟି ସମସ୍ୟାକୁ ମୁଖ୍ୟ ଭୂମିକାର ରୂପ ଦିଆଯାଇ ପାରେ ।

ପ୍ରଥମତଃ ଏଇ ଅଞ୍ଚଳରେ ହୋଇଥିବା ସର୍ଭେରୁ ଜଣାପଡ଼େ ଯେ, ନିରକ୍ଷର ଲୋକଙ୍କ ମଧ୍ୟରେ ପ୍ରାୟ ଅଶୀ ପ୍ରତିଶତ ଲୋକ ଆଦିବାସୀ ଶ୍ରେଣୀୟ ଶବରା ସମ୍ପ୍ରଦାୟର ଅଟନ୍ତି । ଡମ୍ବ, ଘାସି, ବାଉରୀ ଓରେଲି ଜାତିର ମଧ୍ୟ ଅଧିକାଂଶ ନିରକ୍ଷର ଅଟନ୍ତି । ସେମାନଙ୍କ ମଧ୍ୟରୁ ଅଧିକାଂଶ ଜୀବିକା ପାଇଁ ନିଜସ୍ୱ ଜଙ୍ଗଲ ଉପରେ ନିର୍ଭର କରନ୍ତି । ଜଙ୍ଗଲରୁ କାଠ ଓ ଋତୁ ଅନୁଯାୟୀ ବିଭିନ୍ନ ଜିନିଷ ତଥା ଆମ୍ବ, ତେନ୍ତୁଳି, ମହୁଲ, ଶାଳପତ୍ର ଇତ୍ୟାଦି ସଂଗ୍ରହ କରିବା, କାଠ ଜାଳି ଅଙ୍ଗାର ତିଆରି କରି ବିକ୍ରି କରିବା ଓ କିଛି ମାଧ୍ୟମ ନଥିଲେ ମଜୁରି ଖଟିବା ଏମାନଙ୍କ ନିତିଦିନିଆ କାମ । ଦୈନିକ କାମକୁ ବାଦ୍ ଦେଲେ ଅନ୍ୟ ମୁଖ୍ୟ କାମଟି ହେଲା ନିଶା ପାନ କରିବା । ଦଶ ବର୍ଷ ପିଲାଠାରୁ ଆରମ୍ଭ କରି ମହିଳା ଓ ବୃଦ୍ଧ ପର୍ଯ୍ୟନ୍ତ ସମସ୍ତେ ମଦ ଓ ପିକା କୁବ୍ୟବହାରରେ ଅଭ୍ୟସ୍ତ । କେବଳ ଶବରା ଜାତି, ଡମ୍ବ ଅଞ୍ଚଳରେ ନିଶା ପାନର ପ୍ରାବଲ୍ୟ ରହିଛି । ବିଶେଷ କରି ବିଡ଼ି, ସିଗାରେଟ ବା ଅନ୍ୟାନ୍ୟ ଧୂମପାନ ନିଶାର ବ୍ୟବହାର ଏ ଅଞ୍ଚଳରେ ଅଧିକ । ଯଥାର୍ଥରେ କୁହାଯାଇଛି ଯେ ନିଶା ପାନ ମାନବକୁ ଧ୍ୱଂସ ଆଡ଼କୁ ନେଇଯାଏ । ଠିକ୍ ସେମିତି ପ୍ରଗତିର ଏଇ ନୀରିହ ଆଦିବାସୀମାନଙ୍କର ଉନ୍ନତି ପଥରେ ନିଶା ଏକ ଘୋର ଅନ୍ତରାୟ । ନିଶାରେ ଉନ୍ମତ୍ତ ହୋଇ ନିଜର ହିତାହିତ ଜ୍ଞାନ ହରାଇ ବସିଥିବା ଏଇ ଲୋକମାନଙ୍କ ସହ ସାକ୍ଷରତା ବିଷୟ ଦୂରର କଥା, ସାଧାରଣ କଥାବାର୍ତ୍ତା ହେବା ମଧ୍ୟ ଅସମ୍ଭବ ହୋଇପଡ଼େ । ଦିନର ଅଧିକାଂଶ ସମୟ ତ ସେମାନଙ୍କୁ ଦେଖିବାକୁ ମିଳେନାହିଁ । ସନ୍ଧ୍ୟା ସମୟରେ ସେମାନଙ୍କ ନିଶାଗ୍ରସ୍ତ ଚେହେରା ପାଖକୁ ଯିବାକୁ ନାରୀ ସ୍ୱେଚ୍ଛାସେବୀ ତ ଦୂରର କଥା, କୌଣସି ପୁରୁଷ ସ୍ୱେଚ୍ଛାସେବୀ ମଧ୍ୟ ସାହସ କରିପାରିବେ ନାହିଁ । ଏଣୁ, ଏହି ଅଞ୍ଚଳରେ ଅଶୀ ପ୍ରତିଶତ ଆଦିବାସୀ ଅଧ୍ୟୁଷିତ ଇଲାକାରେ ସାକ୍ଷରତା କାର୍ଯ୍ୟକ୍ରମକୁ ବ୍ୟାପକ କରିବାକୁ ହେଲେ ପ୍ରଥମେ ସେମାନଙ୍କର ଅର୍ଥନୈତିକ ଭିତ୍ତିଭୂମି ସୁଦୃଢ଼ କରିବା ତଥା ଏ ଅଞ୍ଚଳରୁ ନିଶା ନିବାରଣ କରିବା ପର୍ଯ୍ୟନ୍ତ ଆବଶ୍ୟକ । ଏଇ ଅଞ୍ଚଳର ଅନେକ ଓଡ଼ିଆ ଓ ତେଲୁଗୁ ଭାଷୀ ବ୍ୟକ୍ତିମାନେ ମଧ୍ୟ ଦାରିଦ୍ର୍ୟର ସୀମାରେଖା ତଳେ ଜୀବନ ସେମାନେ ଅଧିକାଂଶ ସମୟ ଜୀବିକା ନିର୍ବାହ ପାଇଁ ବିଭିନ୍ନ କାର୍ଯ୍ୟ ଅନୁସନ୍ଧାନରେ କଟାଇ ଥାଆନ୍ତି । ସେଇ ସମୟରେ ଅକ୍ଷର ଶିକ୍ଷା ପାଇଁ ସେମାନଙ୍କୁ ଆକୃଷ୍ଟ କରାଇବା ସମ୍ଭବପର ହୋଇପାରୁ ନାହିଁ । ପୁଣି ଶବରା ଆଦିବାସୀମାନଙ୍କ ପ୍ରକୃତି ଭାଷାରେ ଅନଭ୍ୟସ୍ତ ଥିବାରୁ ସେମାନଙ୍କୁ ଓଡ଼ିଆରେ ବୁଝାଇବା ବେଳେବେଳେ କଷ୍ଟକର ହୋଇପଡ଼େ ।

ଦ୍ୱିତୀୟତଃ, ଦ୍ୱିଭାଷୀ ଅଞ୍ଚଳ ହୋଇଥିବାରୁ ତେଲୁଗୁ ଭାଷୀ ନିରକ୍ଷର ବ୍ୟକ୍ତିମାନେ ଓଡ଼ିଆ ଅକ୍ଷର ପଢ଼ିବାକୁ ସାଧାରଣତଃ ପସନ୍ଦ କରିବେ ନାହିଁ। ବିଶେଷ କରି ବୟସ୍କ ବ୍ୟକ୍ତିମାନେ ନିଜର ପ୍ରଚଳିତ ଧାରାରୁ ଅଲଗା ହେବାକୁ ଚାହାନ୍ତି ନାହିଁ। କାରଣ ସେମାନଙ୍କ ମଧ୍ୟରୁ ଅଧିକାଂଶ ଲୋକ ଓଡ଼ିଆ ଭାଷା ଭଲଭାବରେ ବୁଝିପାରନ୍ତି ନାହିଁ କି କହିପାରନ୍ତି ନାହିଁ। ଏଣୁ ସେମାନଙ୍କୁ ଓଡ଼ିଆ ଭାଷାରେ ଅକ୍ଷର ପରିଚୟ କରାଇବା ପାଇଁ ସ୍ୱେଚ୍ଛାସେବୀମାନଙ୍କୁ ଚ ଅସୁବିଧା ନିଶ୍ଚିତ ଭାବରେ ହେବ। ତା'ପରେ ସେଇ ନିରକ୍ଷର ବ୍ୟକ୍ତିମାନେ ମଧ୍ୟ ଓଡ଼ିଆ ଭାଷାକୁ ସାକ୍ଷରତାର ମାଧ୍ୟମ ରୂପେ ଗ୍ରହଣ କରିବାକୁ ସହଜରେ ରାଜି ହୁଅନ୍ତି ନାହିଁ। ସେଇ ଲୋକମାନଙ୍କ ଅକ୍ଷର ପରିଚୟ କରାଇବା ପାଇଁ ରାଜ୍ୟ ସରକାରଙ୍କ ପକ୍ଷରୁ ବିଭିନ୍ନ ପ୍ରକାର ବ୍ୟବସ୍ଥା କରାଯିବା ପାଇଁ ଉଦ୍ୟମ ଆରମ୍ଭ ହୋଇଛି।

ତୃତୀୟତଃ, ଜନଶିକ୍ଷା କାର୍ଯ୍ୟକ୍ରମର ସଫଳ ରୂପାୟନ ପାଇଁ ସ୍ୱତନ୍ତ୍ର ତାଲିମର ବ୍ୟବସ୍ଥା ନିହାତି ଦରକାର। ଜିଲ୍ଲା ଜନଶିକ୍ଷା ଅଧିକାରୀ ଏଥିପାଇଁ ଏଇ ଉପାନ୍ତ ଅଞ୍ଚଳରେ ଯଥେଷ୍ଟ ମାଷ୍ଟର ଟ୍ରେନର୍‌ମାନଙ୍କୁ ତାଲିମ ଦେବା ଆବଶ୍ୟକ। ଯାହା ଫଳରେ ସେମାନେ ସ୍ଥାନୀୟ କଲେଜ ଓ ହାଇସ୍କୁଲ୍ ସ୍ତରର ଛାତ୍ରଛାତ୍ରୀ ତଥା ସ୍ଥାନୀୟ ଜନସାଧାରଣଙ୍କୁ କ୍ଷେତ୍ରୀୟ କାର୍ଯ୍ୟ ପରିଚାଳନା ପାଇଁ ତଥା ପ୍ରକୃତ ଶିକ୍ଷାଦାନ ସମ୍ପର୍କରେ ତଥ୍ୟ ଓ ସାହାଯ୍ୟ ଯୋଗାଇ ଦେଇ ପାରିବେ।

ପୁନଶ୍ଚ, ଏଇ ଅଞ୍ଚଳରେ ନିମ୍ନ ସାକ୍ଷରିତ କ୍ଷେତ୍ରଗୁଡ଼ିକରେ ଶିକ୍ଷାଦାନ ନିମନ୍ତେ ଗୋଟିଏ ଉପଯୁକ୍ତ ସ୍ଥାନ ନିର୍ବାଚନ କରି ଶ୍ରେଣୀ କୋଠରୀ, ଆଲୋକ ବ୍ୟବସ୍ଥା ତଥା ପାଠ୍ୟ ଉପକରଣଗୁଡ଼ିକ ସୁବିଧାରେ ଯୋଗାଇ ଦିଆଯିବା ଦରକାର। ଯାହା ଫଳରେ ସେଇ ଅଞ୍ଚଳରେ ନିରକ୍ଷର ବ୍ୟକ୍ତିମାନେ ନିଜର ସୁବିଧା ସମୟରେ ଗୋଟିଏ ଜାଗାରେ ଏକତ୍ରିତ ହୋଇପାରିବେ ଓ ଶିକ୍ଷାଦାତାମାନେ ଗୋଟିଏ ସ୍ଥାନରେ ବସି ଅନେକ ବ୍ୟକ୍ତିଙ୍କୁ ଶିକ୍ଷାଦାନ କରିପାରିବେ। ଫଳରେ ସମୟ ଓ ସୁବିଧାର ଉପଯୁକ୍ତ ବିନିଯୋଗ ହୋଇପାରିବ।

ଆଉ ଏକ ମୁଖ୍ୟ ସମସ୍ୟା ହେଲା ଜନ ସଚେତନତା। ଜନସାଧାରଣ ଯଦି ସଚେତନ ଥାଆନ୍ତି, ତେବେ ଯେ କୌଣସି ସମସ୍ୟାର ଅଚିରେ ସମାଧାନ ହୋଇପାରିବ। କିନ୍ତୁ ଏଇ ଅଞ୍ଚଳରେ ବିଭିନ୍ନ ସାମାଜିକ ସମସ୍ୟା ତଥା ପରିବେଶ ସୁରକ୍ଷା, ନିଶା ନିବାରଣ, ପରିବାର ନିୟୋଜନ ଆଦି ଦିଗରେ ସେଭଳି ବିଶେଷ ଜନ ସଚେତନତା ପ୍ରକାଶ ପାଉନାହିଁ। ଫଳରେ କେବଳ ନିରକ୍ଷରତା ଦୂରୀକରଣ ଦିଗରେ କାହିଁକି, ପରିବେଶର ପ୍ରଦୂଷଣ ରୋକିବା, ଜନସଂଖ୍ୟା ବୃଦ୍ଧି ହ୍ରାସ କରିବା ଓ ନିଶାପାନ ବନ୍ଦ କରିବା ଆଦି ସମସ୍ୟାଗୁଡ଼ିକ ସମାଧାନ କରିବା ପାଇଁ ମଧ୍ୟ ସୁବିଧା ହେଉନାହିଁ। ମଝିରେ ମଝିରେ ସଚେତନତା ସୃଷ୍ଟି କରିବା ପାଇଁ ସ୍ଥାନୀୟ ଶିକ୍ଷାନୁଷ୍ଠାନଗୁଡ଼ିକ ସାକ୍ଷରତା ଦିବସ, ବିଜ୍ଞାନ ଦିବସ, ପରିବେଶ ଦିବସ ଇତ୍ୟାଦି ପାଳନ କରି ଶୋଭାଯାତ୍ରୀ ଓ ସଭା ସମିତି ମାଧ୍ୟମରେ ପଦକ୍ଷେପ ନେଇଛନ୍ତି କିନ୍ତୁ ସେଗୁଡ଼ିକ ବିଶେଷ ଫଳପ୍ରଦ ହୋଇ ପାରିନାହିଁ। ଏଥିପାଇଁ ଅଞ୍ଚଳର ସମସ୍ତ ବ୍ୟକ୍ତିଙ୍କର ସକ୍ରିୟ ସହଯୋଗ ନିହାତି ଆବଶ୍ୟକ। ଯାହାକି ବହୁତ କମ୍ ପରିଲକ୍ଷିତ ହେଉଛି। ତା' ସହିତ ଜିଲ୍ଲା ପ୍ରଶାସନ ମଧ୍ୟ ଏସବୁ ଦିଗରେ କିଛି ଅଧିକା ପଦକ୍ଷେପ ନେଇ ଜନସାଧାରଣଙ୍କୁ ସାହାଯ୍ୟ କରିବା ଦରକାର। ଯାହା ଫଳରେ ସମସ୍ତ ନାଗରିକ ନିଜର ଜାତୀୟ କର୍ତ୍ତବ୍ୟ ପ୍ରତି ଅଧିକ ସଚେତନଶୀଳ ହୋଇ ଉଠିବେ।

ଉପରୋକ୍ତ କେତୋଟି କାରଣଗୁଡ଼ିକ ଅନୁଧ୍ୟାନ କଲେ ଜଣାଯାଏ ଯେ, ଏଇ ଉପାନ୍ତ ଅଞ୍ଚଳରେ ଜନଶିକ୍ଷାକୁ ବ୍ୟାପକ କରିବାକୁ ହେଲେ ଆଦିବାସୀ ଓ ଗରିବ ଶ୍ରେଣୀର ଅର୍ଥନୈତିକ ଭିତ୍ତିଭୂମିକୁ ସଜାଡ଼ିବାକୁ ପଡ଼ିବ।

ଆଦିବାସୀ ଓ ତେଲୁଗୁ ଭାଷୀ ବ୍ୟକ୍ତିଙ୍କ ପାଇଁ ନିର୍ଦ୍ଦିଷ୍ଟ ଭାଷାର ପୁସ୍ତକ ତଥା ମାଷ୍ଟର ଟ୍ରେନର୍‌ମାନଙ୍କୁ ଯୋଗାଇବାକୁ ପଡ଼ିବ। ନିଶାର ବ୍ୟବହାର କମାଇବାକୁ ବିଭିନ୍ନ ପଦକ୍ଷେପ ନେବାକୁ ପଡ଼ିବ ତଥା ଏ ସମ୍ବନ୍ଧୀୟ ପ୍ରାଚୀରପତ୍ରଗୁଡ଼ିକ ଅଞ୍ଚଳର ମୁଖ୍ୟ ସ୍ଥାନମାନଙ୍କରେ ଲଗାଇ ଜନସାଧାରଣଙ୍କର ଦୃଷ୍ଟି ଆକର୍ଷଣ କରିବାକୁ ପଡ଼ିବ। ଜିଲ୍ଲା ପ୍ରଶାସନ ଓ ଅନ୍ୟାନ୍ୟ ସ୍ୱେଚ୍ଛାସେବୀ ଅନୁଷ୍ଠାନଗୁଡ଼ିକ ବଳିଷ୍ଠ ପଦକ୍ଷେପ ନେଇ ପଥପ୍ରାନ୍ତ ନାଟକ, ସଭା ସମିତି, ଖୋଲା ମଞ୍ଚ ତଥା ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମଗୁଡ଼ିକ ଜରିଆରେ ପ୍ରଥମେ ଜନସଚେତନତା ସୃଷ୍ଟି କରିବାକୁ ପଡ଼ିବ। ସ୍ଥାନୀୟ ଶିକ୍ଷିତ ବ୍ୟକ୍ତିମାନେ ଏହାକୁ ଜାତୀୟ କାର୍ଯ୍ୟକ୍ରମ ବୋଲି ନଭାବି ନିଜର ଏକ ବ୍ୟକ୍ତିଗତ ଦାୟିତ୍ୱ ବୋଲି ଭାବି ଏହାକୁ ତୁଲାଇବା ପାଇଁ ଶପଥ ନେବାକୁ ପଡ଼ିବ। ମନରୁ ଲଜ୍ଜା, ଗର୍ବ, ଅଭିମାନ ତଥା ସମସ୍ତ ପ୍ରକାର ସଂକୀର୍ଣ୍ଣତା ଓ ଆଞ୍ଚଳିକ ମନୋଭାବକୁ ତ୍ୟାଗ କରି ସମସ୍ତଙ୍କୁ ଏହି ମହାସ୍ରୋତରେ ସାମିଲ ହେବାକୁ ପଡ଼ିବ। ତା'ହେଲେ ଯାଇ ଏଭଳି ଏକ ଆଦିବାସୀ ଅଧ୍ୟୁଷିତ ମିଶ୍ର ଭାଷାଭାଷୀ ତଥା ଉପାନ୍ତ ଅଞ୍ଚଳରେ ମଧ୍ୟ ଜନଶିକ୍ଷା କାର୍ଯ୍ୟକ୍ରମର ମହତ୍ ଲକ୍ଷ୍ୟ ସାଧିତ ହୋଇପାରିବ। ଯଦ୍ୱାରା ଦେଶର ପ୍ରଗତି ପଥରେ ଆଉ ଗୋଟିଏ ମାଇଲ ଖୁଣ୍ଟ ସ୍ଥାପନ କରିବାର ଚେଷ୍ଟା ଯେ ସଫଳ ହେବ, ଏଥିରେ ସନ୍ଦେହ ନାହିଁ।

ପ୍ରଧାନ ଶିକ୍ଷୟିତ୍ରୀ,
ସରକାରୀ ବାଳିକା ଉଚ୍ଚ ବିଦ୍ୟାଳୟ,
ପୋ: ଥା: ମୁନିଗୁଡ଼ା, ଜିଲ୍ଲା–ରାୟଗଡ଼ା।

# ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଓ ଆଧୁନିକ ଓଡ଼ିଆ ସାହିତ୍ୟ

ସୁପ୍ରଭା ପରିଡ଼ା

୧୫୬୮ ସାଲରେ ମରହଟ୍ଟାମାନଙ୍କର ଓଡ଼ିଶା ଅଧିକାର ପରେ ଓଡ଼ିଶା ହୋଇଗଲା ପରାଧୀନ । ଏହି ପରାଧୀନତା ଆହୁରି ତୀବ୍ରତର ହେଲା ୧୮୦୩ ସାଲରେ ଯେତେବେଳେ ଭୋନ୍‌ସଲା ପରିବାରଠାରୁ ଦେଓଗାଁ ଚୁକ୍ତି ଅନୁସାରେ ଇଂରେଜମାନେ ଓଡ଼ିଶା ଅଧିକାର କରିନେଲେ । ଏହି ସମୟରେ ଓଡ଼ିଶାର କୌଣସି ସ୍ୱତନ୍ତ୍ର ସତ୍ତା ନଥିଲା । ପଡ଼ୋଶୀ ରାଜ୍ୟମାନଙ୍କ ସହ ମିଶିରହିଥିବା ଓଡ଼ିଶାକୁ ସୁଦୂର କଲିକତାରୁ ଇଂରେଜମାନେ ଶାସନ କରୁଥିଲେ । କାରଣ ଓଡ଼ିଶା ସହିତ ସୁଗମ ସ୍ଥଳପଥର ସଂଯୋଗ ନଥିଲା । ବର୍ଷକୁ ବର୍ଷ ଇଷ୍ଟଇଣ୍ଡିଆ କମ୍ପାନୀ ସେଟଲ୍‌ମେଣ୍ଟ ନିକାର ଅନାବର୍ଷିତ ରାଜସ୍ୱର ଭାରରେ ଓଡ଼ିଶାର ଜନମାନସକୁ ଜର୍ଜରିତ କରିଦେଇଥିଲେ । ଓଡ଼ିଆ ଭାଷା ଭାଷୀ ଜନସାଧାରଣଙ୍କ ପାଇଁ ଗୋଟିଏ ସ୍ୱତନ୍ତ୍ର ଶାସନ ସଂସ୍ଥା ନଥିବାରୁ, ଶୋଷିତ, ଲାଞ୍ଛିତ ଓ ନିପୀଡ଼ିତ ଓଡ଼ିଆ ଜାତିର ଚିତ୍କାର ସେତେବେଳେ ଏକ ମୌନ ଆର୍ତ୍ତନାଦରେ ପରିଣତ ହୋଇଥିଲା । ପାଇକ ବିଦ୍ରୋହ ଓ ସୁରେନ୍ଦ୍ର ସାଏଙ୍କ ବିଦ୍ରୋହ ଓଡ଼ିଶାରେ କମ୍ପାନୀ ଶାସନର ଅଭିଜ୍ଞତାରେ ଜାତୀୟ ସ୍ୱାଭିମାନର ଦୀପ୍ତ ସଙ୍କେତ ହୋଇଥିଲେ ହେଁ ଇଂରେଜମାନଙ୍କ ଚକ୍ରାନ୍ତ ଓ ଶକ୍ତି ନିକଟରେ ତାହା ବେଶୀଦିନ ପ୍ରଭାବ ପକାଇ ପାରିଲାନାହିଁ । ଓଡ଼ିଆ ଜାତି ତା'ର ସ୍ୱାତନ୍ତ୍ର୍ୟ ହରାଇଲା । ଓଡ଼ିଆ ଜାତି ତା'ର ଐତିହ୍ୟ ଓ ପରମ୍ପରାପ୍ରତି ଭୁଲିଗଲା । ଓଡ଼ିଆ ଭାଷା ମଧ୍ୟ ସଙ୍କୁଚିତ ହୋଇ ଆସିଲା । ହିନ୍ଦୀ, ବଙ୍ଗଳା ଓ ତେଲୁଗୁ, ଓଡ଼ିଆ ଭାଷାକୁ ଗ୍ରାସ କରିଦେବାକୁ ଯେପରି ପ୍ରତିଯୋଗିତା କରି ଉଠିଲେ । ଏକ ପକ୍ଷରେ ଓଡ଼ିଶାର ଗଜପତି–ଶାସନ–ପରମ୍ପରାର ବିଲୋପ ପରେ ପରେ ଯେଉଁ ଜାତୀୟ ଅବକ୍ଷୟ ସୃଷ୍ଟି ହୋଇ ଆସିଥିଲା ତାହା ଊନବିଂଶ ଶତାବ୍ଦୀ ବେଳକୁ ଆହୁରି ଉତ୍କଟ ହୋଇଗଲା । ଦେଶୀୟ ରାଜାମାନଙ୍କ ମଧ୍ୟରେ ସଂହତି ରହିଲାନାହିଁ । ଇଂରେଜ ଶାସନରେ ସେହିସବୁ ରାଜ୍ୟ ପୁଣି ହୋଇଗଲା ଇଂରେଜ ଅଧୀନ । ଐତିହ୍ୟ ଓ ପରମ୍ପରାବୋଧ ବିଲୁପ୍ତ, ଭାଷାପ୍ରୀତି ନିଶ୍ଚିହ୍ନ, ଦେଶୀୟ ରାଜା ଓ ଜମିଦାରଙ୍କ ମଧ୍ୟରେ ସଂହତି ଅଭାବ, କୃଷିଭିତ୍ତିକ ସମାଜର ବିପର୍ଯ୍ୟୟ ଜାତୀୟ ସ୍ୱାଭିମାନକୁ ନଷ୍ଟ କରି ଦେଇଥିଲା ।

ଏହି ପୃଷ୍ଠଭୂମିରେ, ୧୮୬୬ ସାଲର ନଅଙ୍କ ଦୁର୍ଭିକ୍ଷ ଓଡ଼ିଆ ଶରୀର ଓ ମନ ଉଭୟରେ ଶକ୍ତ ଆଘାତ ଆଣିଲା । ତତ୍କାଳୀନ ବଙ୍ଗଳା ପ୍ରେସିଡେନ୍‌ସି ଶାସନର ଉଦାସୀନତା, ଦୂରଦୃଷ୍ଟିହୀନତା ଓ ଅବହେଳା ଫଳରେ ଦୁର୍ଭିକ୍ଷରେ ଓଡ଼ିଶା ଗୋଟିଏ ମଶାଣିପଦାରେ ପରିଣତ ହୋଇ ଥିଲା । ଏପରି ଏକ ପରିସ୍ଥିତିରେ ଓଡ଼ିଶାରୁ ଓଡ଼ିଆ ଭାଷା ଉଠାଇଦେଇ ବଙ୍ଗଳା ଭାଷା ପ୍ରଚଳନ କରାଯିବା ପାଇଁ ଉଦ୍ୟମ ଓ ସରକାରୀ ଇସ୍ତାହାର ପ୍ରକାଶ ପାଇଲା । ଏହି ହେଲା ଓଡ଼ିଶାର ଜାତୀୟ ଜାଗରଣର ଆଦ୍ୟ ଉପାଦାନ । ଆତ୍ମବିଲୁପ୍ତିରୁ ଆତ୍ମଜାଗରଣ ଭାଷାକୁ ନେଇ ସୃଷ୍ଟି ହେଲା । ଭାଷା ହେଲା ଜାତୀୟତାର ସଂହତି ମନ୍ତ୍ର । ଓଡ଼ିଶାରେ ୧୮୭୦ ସାଲ ବେଳକୁ ଯେଉଁ ଜାତୀୟ ଜାଗରଣ ସୃଷ୍ଟି ହେଲା ତାହା ଥିଲା ଭାଷାକେନ୍ଦ୍ରିକ ଜାତୀୟତାବୋଧର ନିଦର୍ଶନ । ଏହି ଜାତୀୟତାବୋଧ ସୃଷ୍ଟି କରିବାରେ ଗୌରୀଶଙ୍କର ଓ 'ଉତ୍କଳ ଦୀପିକା', ଫକୀରମୋହନ ଓ 'ବାଲେଶ୍ୱର' ସମ୍ବାଦ ବାହିକାର ଅବଦାନ ଥିଲା ଗୁରୁତ୍ୱପୂର୍ଣ୍ଣ । ଏହି ଜାତୀୟତା ବୋଧର ଲକ୍ଷ୍ୟ ଥିଲା ଓଡ଼ିଶାରେ ଓଡ଼ିଆ ଭାଷାକୁ ଚଳାଇବା, ଭାଷାକୁ ମାତୃଭାଷା ରୂପେ ସମ୍ମାନ ଦେବା, ଆଧୁନିକ ସାହିତ୍ୟ ସୃଷ୍ଟି କରିବା, ପ୍ରାଚୀନ ସାହିତ୍ୟକୁ ଉଦ୍ଧାର କରିବା, ଓଡ଼ିଆଭାଷୀ ଅଞ୍ଚଳରୁ ଅନ୍ୟ ଭାଷାକୁ ଉଠାଇ ସେଠାରେ ଓଡ଼ିଆ ଭାଷା ଚଳାଇବା ଓ ସର୍ବୋପରି ସମଗ୍ର ଓଡ଼ିଆଭାଷୀ ଅଞ୍ଚଳମାନଙ୍କ ମଧ୍ୟରେ ସଂହତି ଆଣିବା । ଏସବୁ ଭିତରେ ଭାଷା ହିଁ ଥିଲା ସଂଯୋଗ ସେତୁ ଏବଂ ପ୍ରଧାନ ଜାତୀୟ ଜାଗରଣ ପାଇଁ ବଳିଷ୍ଠ ଅସ୍ତ୍ର ।

ଊନବିଂଶ ଶତାବ୍ଦୀର ଶେଷ ତିରିଶ ବର୍ଷ ମଧ୍ୟରେ ଭାଷା କେନ୍ଦ୍ରିକ ଜାତୀୟତାବୋଧର ପ୍ରାଣପ୍ରତିଷ୍ଠା ହେବା ସଙ୍ଗେ ସଙ୍ଗେ ମାତୃଭୂମି ପ୍ରତି ମଧ୍ୟ ମମତା ପ୍ରକାଶ ପାଇଲା । ଜାତିର ସର୍ବାଙ୍ଗୀନ ଉନ୍ନତି ପାଇଁ ଏକ ଗଠନମୂଳକ ମନୋଭାବ ଉଦ୍ରେକ ହେଲା । ଇତିହାସ ଓ ଐତିହ୍ୟ ପ୍ରତି ନବଶିକ୍ଷିତ ମାନସରେ ସଚେତନତା ସୃଷ୍ଟି ହେଲା । ଇଂରେଜ ଶାସନ ଆରମ୍ଭ କାଳରୁ ଅଖଣ୍ଡ ଓଡ଼ିଶା ବାରମ୍ବାର ଖଣ୍ଡଖଣ୍ଡ ହୋଇ ମାନ୍ଦ୍ରାଜ, ମଧ୍ୟପ୍ରଦେଶ, ବିହାର ଓ ବଙ୍ଗଳା ସହିତ ମିଶିଥିଲା ଏବଂ କୃତ୍ରିମ ରାଜନୈତିକ ଶିକାର ଫଳରେ ସେହିସବୁ ଅଞ୍ଚଳରେ ଓଡ଼ିଆ ଭାଷାକୁ ଉଚ୍ଛେଦ କରାଯିବା ପାଇଁ ଉଦ୍ୟମ ହୋଇଥିଲା । ୧୮୬୯/୭୦ ସାଲ ପର୍ଯ୍ୟନ୍ତ ଏହି ଉଦ୍ୟମ ନିରବିଚ୍ଛିନ୍ନ ଭାବରେ ଚାଲିଥିଲା । କିନ୍ତୁ ଏହି ସମୟକୁ ପାଶ୍ଚାତ୍ୟ ଶିକ୍ଷାପ୍ରାପ୍ତ ନୂତନ ଶିକ୍ଷିତ ଗୋଷ୍ଠୀର ଆବିର୍ଭାବ ଘଟିଥିଲା ଏବଂ ସେମାନଙ୍କ ଭିତରେ ଦେଶପ୍ରୀତି ଓ ମାତୃଭାଷା ପ୍ରୀତି ପ୍ରକାଶ ପାଇବାରୁ ଓଡ଼ିଆ ଭାଷାକୁ ବିଲୋପ କରିବା ପାଇଁ ଯେଉଁ ଷଡ଼ଚକ୍ରାନ୍ତ ହୋଇଆସିଥିଲା ତା'ର ଏକରକମ ପୂର୍ଣ୍ଣଚ୍ଛେଦ ପଡ଼ିଲା । ଓଡ଼ିଆ ଭାଷାର ମୌଳିକତା ଓ ପ୍ରାଚୀନତାକୁ ଇଂରେଜ ସାହେବମାନେ ସ୍ୱୀକାର କରିବାକୁ ବାଧ୍ୟ ହେଲେ ଏବଂ ପ୍ରତିବେଶୀ ଅଣଓଡ଼ିଆମାନେ ମଧ୍ୟ ଏହାକୁ ମାନିନେଲେ । ଭାଷା ସୁରକ୍ଷା ବିଜୟ ହିଁ ଯଥାର୍ଥରେ ଓଡ଼ିଆ ଜାତି ଭିତରେ ସୃଷ୍ଟିକଲା ଆତ୍ମବିଶ୍ୱାସ ଓ ସ୍ୱାଭିମାନ । ଭାଷା ସୁରକ୍ଷା ଆନ୍ଦୋଳନ ହିଁ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ଦେଲା ଅଭିନବ ପ୍ରେରଣା ।

ଏହି କାର୍ଯ୍ୟ ସାଧନର ପ୍ରଥମ ଉଦ୍ୟମ ସ୍ୱରୂପ ୧୮୭୫ ସାଲରେ ବାଲେଶ୍ୱରର ରାଜା ଶ୍ୟାମାନନ୍ଦ ଦେ, ଓଡ଼ିଶାର ତତ୍କାଳୀନ ଜଣେ ସେକ୍ରେଟରୀ ବିଚିତ୍ରାନନ୍ଦ ଦାସ, ବଙ୍ଗଳାର ଲେଫ୍‌ଟନାଣ୍ଟ ଗଭର୍ଣ୍ଣର ଓଡ଼ିଶା ଆସିଥିବାବେଳେ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ ପାଇଁ ତାଙ୍କୁ ଗୋଟିଏ 'ସ୍ମାରକପତ୍ର ଦେଇଥିଲେ । କିନ୍ତୁ କୌଣସି ସଙ୍ଗଠିତ ଆୟୋଜନ ନଥିବାରୁ ସେ ସ୍ମାରକପତ୍ରର କୌଣସି ମୂଲ୍ୟ ଦିଆଯାଇନାହିଁ । ଓଡ଼ିଶାରେ ସେତେବେଳେ କୌଣସି ରାଜନୈତିକ ମଞ୍ଚ ନଥିଲା । ଓଡ଼ିଆ ଭାଷାରକ୍ଷା ଆନ୍ଦୋଳନ ବେଳେ ଯେଉଁ କେତୋଟି ସଙ୍ଗଠନ ଗଢ଼ିଉଠିଲା, ଭାଷା ସଂକଟର ସମାଧାନ ପରେ କ୍ରମେ ସେସବୁ ନିସ୍ତେଜ ହୋଇ ଆସିଥିଲା । ଏ ପରିସ୍ଥିତିରେ ଖଣ୍ଡବିଖଣ୍ଡିତ ଓଡ଼ିଶାକୁ ଏକାଠି ମିଶାଇ ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବାପାଇଁ, ସ୍ମାରକପତ୍ର ବା ଆବେଦନର ପ୍ରକ୍ରିୟା ଚଳାଇ ଯିବା ସାର ହେଲା ।

୧୮୯୫ ସାଲ ଜାନୁୟାରୀ ୧୫ ତାରିଖଦିନ ସେଣ୍ଟ୍ରାଲ ପ୍ରୋଭିନ୍‌ସେସ୍‌ର ଚିଫ୍ କମିଶନର ସମ୍ବଲପୁର କୋର୍ଟ କଚେରୀମାନଙ୍କରୁ 'ଓଡ଼ିଆ ଭାଷା ଉଚ୍ଛେଦ କରି ହିନ୍ଦୀ ଭାଷା ପ୍ରଚଳନ କଲେ । ସମ୍ବଲପୁର ବାସୀ ଓଡ଼ିଆ ଭାଷା ଉପରେ ଏହି ଅବାଞ୍ଛିତ ଆକ୍ରମଣ ଫଳରେ ଆନ୍ଦୋଳିତ ଓ ବିକ୍ଷୁବ୍ଧ ହୋଇଉଠିଲେ । ସମଗ୍ର ଓଡ଼ିଶାରେ ମଧ୍ୟ ଏହା ତୀବ୍ର ଅସନ୍ତୋଷର ସୂତ୍ରପାତ କରିଥିଲା । ଏହା ପରେ ପରେ କ୍ରମାଗତ ଭାବରେ ସମ୍ବଲପୁରରୁ ଓଡ଼ିଆ ଭାଷା ଉଚ୍ଛେଦର ବିରୋଧକରି ଉତ୍କଳ-ସଭା ପକ୍ଷରୁ କଟକରେ ସଭାସମିତିମାନ ଆରମ୍ଭ ହୋଇଗଲା । କିନ୍ତୁ ଭାରତ ସରକାର ବା ସେଣ୍ଟ୍ରାଲ ପ୍ରୋଭିନ୍‌ସେସ୍ ସରକାରଙ୍କ ଉପରେ ସେସବୁ କୌଣସି ରେଖାପାତ କରିବାରେ ସଫଳ ନହେଲେ ହେଁ, ଓଡ଼ିଆ ଭଷା ଭାଷୀ ବିଚ୍ଛିନ୍ନ ଅଞ୍ଚଳମାନଙ୍କର ଏକତ୍ରୀକରଣ ପାଇଁ ଓଡ଼ିଶାବାସୀଙ୍କ ସଂକଳ୍ପକୁ ଏହା ଦୃଢ଼ତର କରିଦେଲା । ଫଳରେ ସମ୍ବଲପୁର ଓ ଗଞ୍ଜାମକୁ ଓଡ଼ିଶା ସହିତ ମିଶାଇଦେବାକୁ ପ୍ରବଳ ଜନଜାଗରଣ ସୃଷ୍ଟି ହୋଇଥିଲା ।

ଭାଷାପ୍ରୀତି ଓ ଦେଶମିଶ୍ରଣକୁ କେନ୍ଦ୍ରକରି ଯେଉଁ ଜାତୀୟ ଅଭିମାନ ଜାଗରିତ ହୋଇଉଠୁଥିଲା ତା'ର ଏକ ବଳିଷ୍ଠ ଅଭିବ୍ୟକ୍ତି ହେଲା ମଧୁସୂଦନ ଦାସଙ୍କ ପ୍ରତିଷ୍ଠିତ 'ଉତ୍କଳ ସମ୍ମିଳନୀ' (୧୯୦୩) । ଏହି ସମ୍ମିଳନୀ ହେଲା ଓଡ଼ିଆ ଜାତିର ମିଳନ ମଞ୍ଚ । ଏହିଠାରୁ ଆରମ୍ଭ ହେଲା ସ୍ୱତନ୍ତ୍ର–ଉତ୍କଳ ପ୍ରଦେଶ ଗଠନ କରିବାର ଐତିହାସିକ ପଦଯାତ୍ରା । ମାତୃଭାଷା ଓ ମାତୃଭୂମି ଉଭୟକୁ ଜନନୀ ରୂପେ ବିବେଚନା କରାଗଲା । ପୂର୍ବର ଭାଷାକେନ୍ଦ୍ରିକ ଜାତୀୟତା ବୋଧ ଏହିଠାରୁ ସୀମାକେନ୍ଦ୍ରିକ ବା ସ୍ୱତନ୍ତ୍ର ପ୍ରଦେଶ ଗଠନ କେନ୍ଦ୍ରିକ ଜାତୀୟତା ବୋଧରେ ରୂପାନ୍ତରିତ ହୋଇଥିଲା । ୧୯୦୫ ସାଲରେ ସମ୍ବଲପୁର ଜିଲ୍ଲାକୁ ମଧ୍ୟପ୍ରଦେଶରୁ କାଢିଆଣି ବଙ୍ଗଳା ପ୍ରେସିଡେନ୍‌ସୀ ଅନ୍ତର୍ଗତ ଓଡିଶା ଡିଭିଜନ ସହିତ ମିଶାଇ ଦିଆଗଲା । ସମ୍ବଲପୁର ଜିଲ୍ଲାର ଓଡିଶା ସହିତ ମିଶ୍ରଣ, ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନ ସମ୍ପର୍କରେ ସେତେବେଳେ ସମସ୍ତଙ୍କର ଉତ୍ସାହ ଓ ଆଶାକୁ ବଢାଇ ଦେଇଥିଲା ।

ଶେଷରେ ଏହି ଆଶା, ବିଶ୍ୱାସ ଓ ସଂଗ୍ରାମର ଫଳଶ୍ରୁତି ସ୍ୱରୂପ ସର୍ବଶ୍ରୀ ମଧୁସୂଦନ ଦାସ, ଗୋପବନ୍ଧୁ ଦାସ, ଗୌରିଶଙ୍କର ରାୟ, ଖଲ୍ଲିକୋଟର ରାଜା ହରିହର ମର୍ଦ୍ଦରାଜ ଦେବ, ମୟୂରଭଞ୍ଜର ରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜଦେବଙ୍କ ଉଦ୍ୟମ ଫଳରେ ବ୍ରିଟିଶ ପାର୍ଲିଆମେଣ୍ଟରେ ଗଭର୍ଣ୍ଣମେଣ୍ଟ ଅଫ୍ ଇଣ୍ଡିଆ ଅର୍ଡର (କନ୍‌ଷ୍ଟିଚ୍ୟୁସନ ଅଫ ଓଡିଶା, ୧୯୩୬) ଅନୁସାରେ ୧୯୩୬ ଅପ୍ରେଲ ପହିଲାଦିନ ଭାଷାଭିତ୍ତିକ ଓଡିଶା ପ୍ରଦେଶ ଗଠିତ ହେଲା ।

ରାଜନୀତିକ ଦୃଷ୍ଟିକୋଣରୁ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ଏମାନେ ପ୍ରତ୍ୟକ୍ଷ ଭାବରେ ପ୍ରଚେଷ୍ଟା କରିଥିଲେ । କିନ୍ତୁ ଯେଉଁମାନେ ପରୋକ୍ଷ ଭାବରେ ରହି ନିର୍ଜୀବ, ନିଷ୍ପ୍ରାଣ ଓଡ଼ିଆର ପ୍ରାଣବାୟୁକୁ ଗତିଶୀଳ କରିଦେଇଥିଲେ, ସେମାନେ ହେଉଛନ୍ତି ତତ୍କାଳୀନ ସାହିତ୍ୟିକଗଣ । ସାହିତ୍ୟ ଏପରି ଏକ ମାଧ୍ୟମ ଯାହା ପାରୋକ୍ଷ ହେଲେ ମଧ୍ୟ ପ୍ରଭାବ ପକାଇଥାଏ । ତେଣୁ ଏହି ସମୟର ସାହିତ୍ୟିକମାନେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଦିଗରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ଗୋଟିଏ କଥାରେ କହିବାକୁ ଗଲେ ଉନବିଂଶ ଶତାବ୍ଦୀର ଶେଷ ଚରଣ ଭାଗର ଓଡ଼ିଆ ସାହିତ୍ୟ ଓଡ଼ିଶୀ ଜାତୀୟ ଭାବରେ ହୋଇଛି ପଣ୍ଡିତ । ବସ୍ତୁତ ସାହିତ୍ୟ ସୃଷ୍ଟିରେ ରାଧାନାଥଙ୍କ ଚିଲିକା (୧୮୯୧) ମହାଯାତ୍ରା (୧୮୯୨) ଓ ଦରବାର (୧୮୯୦)ରେ ଏକ ବଳିଷ୍ଠ ଓଡ଼ିଶୀ ଜାତୀୟତାବୋଧ କେବଳ ସୃଷ୍ଟି ହୋଇନାହିଁ, ବରଂ ଏକ ବୃକ୍ଷରେ ପରିଣତ ହୋଇଛି । ଏହି ଭାବନା ନାନାଦି ରାଜନୈତିକ ଓ ଐତିହାସିକ ଘଟଣାବଳୀକୁ ଅବଲମ୍ବନ କରି ସତ୍ୟବାଦୀ ଯୁଗରେ ଏକ ବିପୁଳ ବନସ୍ପତିରେ ପରିଣତ ହୋଇଛି । ମୋଟ ଉପରେ ୧୮୯୧ ସାଲଠାରୁ ୧୯୨୧ ସାଲ ପର୍ଯ୍ୟନ୍ତ ଓଡ଼ିଶୀ ଜାତୀୟ ଭାବନା ଅଧିକ ପ୍ରାଣବନ୍ତ ହୋଇଉଠିଛି । ଗତ ଶତାବ୍ଦୀର ନଅଙ୍କ ଦୁର୍ଭିକ୍ଷ କାଳରୁ ଭାଷା ବିରୋଧୀ ଓ ଭାଷା ସୁରକ୍ଷା ଆନ୍ଦୋଳନ ବାଟଦେଇ ଭାରତୀୟ ସ୍ୱାଧୀନତା ଆନ୍ଦୋଳନର ସଫଳ ପରିପ୍ରକାଶ ୧୯୨୧ ସାଲ ପର୍ଯ୍ୟନ୍ତ ଓଡ଼ିଶାର ଜାତୀୟ ଜୀବନରେ ଯେଉଁ ସଙ୍କଟ ଓ ତା'କୁ ସାମ୍ନା କରିବାର ପ୍ରତିରୋଧ ଶକ୍ତି ପ୍ରକଟିତ ହୋଇଛି ତାହାରି ଉପରେ ଏକ ବଳିଷ୍ଠ ସାହିତ୍ୟ ସୌଧ ଗଢ଼ିଉଠିଛି । କିନ୍ତୁ ୧୯୨୧ ସାଲ ବେଳକୁ ସତ୍ୟବାଦୀ ବନବିହାରର ସ୍ରଷ୍ଟାଗଣ ପ୍ରାୟ ଜାତୀୟ ମହାସ୍ରୋତରେ ଝାସ ଦେବା ଫଳରେ ସେମାନଙ୍କ ସୃଷ୍ଟି ପ୍ରକ୍ରିୟାରେ ଓଡ଼ିଶାର ସ୍ୱପ୍ନ ଅବିମିଶ୍ର ହୋଇ ନରହି ଭାରତୀୟ ସ୍ୱାଧୀନତାର ଚିନ୍ତା ଓ ଚେତନାକୁ ଆବୋରି ବସିଛି । ତଥାପି ମଧ୍ୟ ଏମାନେ ଓଡ଼ିଶା ପ୍ରଦେଶ ଗଠନର ଦୁର୍ବାର ଭୂମିକାକୁ ଗୌଣ କରିନାହାନ୍ତି । ଏମାନଙ୍କ ପରବର୍ତ୍ତୀକାଳୀନ ଲେଖାବଳୀରେ ଓଡ଼ିଶା ଓ ଭାରତ ସମାନ ଗୁରୁତ୍ୱ ବହନ କରିଛି । କିନ୍ତୁ ସତ୍ୟବାଦୀର ବହୁ ସତୀର୍ଥ ଓ ଏହି ଉଗ୍ରଜାତୀୟତାବାଦୀ ଧାରାର ବଳିଷ୍ଠ ସମର୍ଥକମାନେ ପ୍ରାୟ ୧୯୩୫ ସାଲ ପର୍ଯ୍ୟନ୍ତ ସେମାନଙ୍କ ସୃଷ୍ଟି ପ୍ରକ୍ରିୟାରେ ଓଡ଼ିଶାର ଐତିହ୍ୟ, ଇତିହାସ, କାହାଣୀ, କିମ୍ବଦନ୍ତୀକୁ ଗୁରୁତ୍ୱ ଦେଇ ଏକ ଉଦ୍‌ବୋଧନଶୀଳ ସାହିତ୍ୟ ସୃଷ୍ଟି ଦିଗରେ ପ୍ରୟାସ କରିଛନ୍ତି । ତେଣୁ ଏହି ଜାତୀୟତାବାଦୀ ଯୁଗର ପରିସର ପରିବ୍ୟାପ୍ତ ହୋଇ ଓଡ଼ିଶା ପ୍ରଦେଶ ଗଠନ ତାରିଖ ପର୍ଯ୍ୟନ୍ତ ସମ୍ପ୍ରସାରିତ ହୋଇ ରହିଛି ବୋଲି ମାନିବାକୁ ହେବ । ଏପରିକି ଏହି ସମୟରେ ଉତ୍କଟ ରୋମାଣ୍ଟିକ୍ ଦୃଷ୍ଟିଭଙ୍ଗୀକୁ ନେଇ ସବୁଜ ଗୋଷ୍ଠୀ ରଚନାର ସଂଗଠିତ

# ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଓ ଆଧୁନିକ ଓଡ଼ିଆ ସାହିତ୍ୟ

ସୁପ୍ରଭା ପରିଡ଼ା

୧୫୬୮ ସାଲରେ ମରହଟ୍ଟାମାନଙ୍କର ଓଡ଼ିଶା ଅଧିକାର ପରେ ଓଡ଼ିଶା ହୋଇଗଲା ପରାଧୀନ । ଏହି ପରାଧୀନତା ଆହୁରି ତୀବ୍ରତର ହେଲା ୧୮୦୩ ସାଲରେ ଯେତେବେଳେ ଭୋନ୍‌ସଲା ପରିବାରଠାରୁ ଦେଓଗାଁ ଚୁକ୍ତି ଅନୁସାରେ ଇଂରେଜମାନେ ଓଡ଼ିଶା ଅଧିକାର କରିନେଲେ । ଏହି ସମୟରେ ଓଡ଼ିଶାର କୌଣସି ସ୍ୱତନ୍ତ୍ର ସତ୍ତା ନଥିଲା । ପଡ଼ୋଶୀ ରାଜ୍ୟମାନଙ୍କ ସହ ମିଶିରହିଥିବା ଓଡ଼ିଶାକୁ ସୁଦୂର କଲିକତାରୁ ଇଂରେଜମାନେ ଶାସନ କରୁଥିଲେ । କାରଣ ଓଡ଼ିଶା ସହିତ ସୁଗମ ସ୍ଥଳପଥର ସଂଯୋଗ ନଥିଲା । ବର୍ଷକୁ ବର୍ଷ ଇଷ୍ଟଇଣ୍ଡିଆ କମ୍ପାନୀ ସେଟଲ୍‌ମେଣ୍ଟ ଚଳାଇ କ୍ରମବର୍ଦ୍ଧିତ ରାଜସ୍ୱର ଭାରରେ ଓଡ଼ିଶାର ଜନମାନସକୁ ଦଳିତଳାନ୍ତ କରିଦେଇଥିଲେ । ଓଡ଼ିଆ ଭାଷା ଭାଷୀ ଜନସାଧାରଣଙ୍କ ପାଇଁ ଗୋଟିଏ ସ୍ୱତନ୍ତ୍ର ଶାସନ ସଂସ୍ଥା ନଥିବାରୁ, ଶୋଷିତ, ଲାଞ୍ଛିତ ଓ ନିପୀଡ଼ିତ ଓଡ଼ିଆ ଜାତିର ଚିତ୍କାର ସେତେବେଳେ ଏକ ମୌନ ଆର୍ତ୍ତନାଦରେ ପରିଣତ ହୋଇଥିଲା । ପାଇକ ବିଦ୍ରୋହ ଓ ସୁରେନ୍ଦ୍ର ସାଏଙ୍କ ବିଦ୍ରୋହ ଓଡ଼ିଶାରେ କମ୍ପାନୀ ଶାସନର ଆବିର୍ଭାବରେ ଜାତୀୟ ସ୍ୱାଭିମାନର ଦୀପ୍ତ ସଙ୍କେତ ହୋଇଥିଲେ ହେଁ ଇଂରେଜମାନଙ୍କ ଚକ୍ରାନ୍ତ ଓ ଶକ୍ତି ନିକଟରେ ତାହା ବେଶୀଦିନ ପ୍ରଭାବ ପକାଇ ପାରିଲାନାହିଁ । ଓଡ଼ିଆ ଜାତି ତା'ର ସ୍ୱାତନ୍ତ୍ର୍ୟ ହରାଇଲା । ଓଡ଼ିଆ ଜାତି ତା'ର ଐତିହ୍ୟ ଓ ପରମ୍ପରାପ୍ରୀତି ଭୁଲିଗଲା । ଓଡ଼ିଆ ଭାଷା ମଧ୍ୟ ସଙ୍କୁଚିତ ହୋଇ ଆସିଲା । ହିନ୍ଦୀ, ବଙ୍ଗଳା ଓ ତେଲୁଗୁ, ଓଡ଼ିଆ ଭାଷାକୁ ଗ୍ରାସ କରିଦେବାକୁ ଯେପରି ପ୍ରତିଯୋଗିତା କରି ଉଠିଲେ । ଏକ ପକ୍ଷରେ ଓଡ଼ିଶାର ଗଜପତି–ଶାସନ–ପରମ୍ପରାର ବିଲୋପ ପରେ ପରେ ଯେଉଁ ଜାତୀୟ ଅବକ୍ଷୟ ସୃଷ୍ଟି ହୋଇ ଆସିଥିଲା ତାହା ଊନବିଂଶ ଶତାବ୍ଦୀ ବେଳକୁ ଆହୁରି ଉତ୍କଟ ହୋଇଗଲା । ଦେଶୀୟ ରାଜାମାନଙ୍କ ମଧ୍ୟରେ ସଂହତି ରହିଲାନାହିଁ । ଇଂରେଜ ଶାସନରେ ସେହିସବୁ ରାଜ୍ୟ ପୁଣି ହୋଇଗଲା ଇଂରେଜ ଅଧୀନ । ଐତିହ୍ୟ ଓ ପରମ୍ପରାବୋଧ ବିଲୁପ୍ତ, ଭାଷାପ୍ରୀତି ନିଶ୍ଚିହ୍ନ, ଦେଶୀୟ ରାଜା ଓ ଜମିଦାରଙ୍କ ମଧ୍ୟରେ ସଂହତି ଅଭାବ, କୃଷିଭିତ୍ତିକ ସମାଜର ବିପର୍ଯ୍ୟୟ ଜାତୀୟ ସ୍ୱାଭିମାନକୁ ନଷ୍ଟ କରି ଦେଇଥିଲା ।

ଏହି ପୃଷ୍ଠ ଭୂମିରେ, ୧୮୬୬ ସାଲର ନଅଙ୍କ ଦୁର୍ଭିକ୍ଷ ଓଡ଼ିଆ ଶରୀର ଓ ମନ ଉଭୟରେ ଶକ୍ତ ଆଘାତ ଆଣିଲା । ତତ୍କାଳୀନ ବଙ୍ଗଳା ପ୍ରେସିଡେନ୍‌ସି ଶାସନର ଉଦାସୀନତା, ଦୂରଦୃଷ୍ଟିହୀନତା ଓ ଅବହେଳା ଫଳରେ ଦୁର୍ଭିକ୍ଷରେ ଓଡ଼ିଶା ଗୋଟିଏ ମଶାଣିପଦାରେ ପରିଣତ ହୋଇ ଥିଲା । ଏପରି ଏକ ପରିସ୍ଥିତିରେ ଓଡ଼ିଶାରୁ ଓଡ଼ିଆ ଭାଷା ଉଠାଇଦେଇ ବଙ୍ଗଳା ଭାଷା ପ୍ରଚଳନ କରାଯିବା ପାଇଁ ଉଦ୍ୟମ ଓ ସରକାରୀ ଇସ୍ତାହାର ପ୍ରକାଶ ପାଇଲା । ଏହା ହେଲା ଓଡ଼ିଶାର ଜାତୀୟ ଜାଗରଣର ଆଦ୍ୟ ଉପାଦାନ । ଆସନ୍ନବିଲୁପ୍ତିରୁ ଆତ୍ମଜାଗରଣ ଭାଷାକୁ ନେଇ ସୃଷ୍ଟି ହେଲା । ଭାଷାହେଲା ଜାତୀୟତାର ସଂହତି ମନ୍ତ୍ର । ଓଡ଼ିଶାରେ ୧୮୭୦ ସାଲ ବେଳକୁ ଯେଉଁ ଜାତୀୟ ଜାଗରଣ ସୃଷ୍ଟି ହେଲା ତାହା ଥିଲା ଭାଷାକେନ୍ଦ୍ରିକ ଜାତୀୟତାବୋଧର ନିଦର୍ଶନ । ଏହି ଜାତୀୟତାବୋଧ ସୃଷ୍ଟି କରିବାରେ ଗୌରୀଶଙ୍କର ଓ 'ଉତ୍କଳ ଦୀପିକା', ଫକୀରମୋହନ ଓ 'ବାଲେଶ୍ୱର' ସମ୍ବାଦ ବାହିକାର ଅବଦାନ ଥିଲା ଗୁରୁତ୍ୱପୂର୍ଣ୍ଣ । ଏହି ଜାତୀୟତା ବୋଧର ଲକ୍ଷ୍ୟ ଥିଲା ଓଡ଼ିଶାରେ ଓଡ଼ିଆ ଭାଷାକୁ ଚଳାଇବା, ଭାଷାକୁ ମାତୃଭାଷା ରୂପେ ସମ୍ମାନ ଦେବା, ଆଧୁନିକ ସାହିତ୍ୟ ସୃଷ୍ଟି କରିବା, ପ୍ରାଚୀନ ସାହିତ୍ୟକୁ ଉଦ୍ଧାର କରିବା, ଓଡ଼ିଆଭାଷୀ ଅଞ୍ଚଳରୁ ଅନ୍ୟାନ୍ୟ ଭାଷାକୁ ଉଠାଇ ସେଠାରେ ଓଡ଼ିଆ ଭାଷା ଚଳାଇବା ଓ ସର୍ବୋପରି ସମଗ୍ର ଓଡ଼ିଆଭାଷୀ ଅଞ୍ଚଳମାନଙ୍କ ମଧ୍ୟରେ ସଂହତି ଆଣିବା । ଏସବୁ ଭିତରେ ଭାଷା ହିଁ ଥିଲା ସଂଯୋଗ ସେତୁ ଏବଂ ସମଗ୍ର ଜାତୀୟ ଜାଗରଣ ପାଇଁ ବଳିଷ୍ଠ ଅସ୍ତ୍ର ।

ଊନବିଂଶ ଶତାବ୍ଦୀର ଶେଷ ତିରିଶ ବର୍ଷ ମଧ୍ୟରେ ଭାଷାକେନ୍ଦ୍ରିକ ଜାତୀୟତାବୋଧର ପ୍ରାଣପ୍ରତିଷ୍ଠା ହେବା ସଙ୍ଗେ ସଙ୍ଗେ ମାତୃଭୂମି ପ୍ରତି ମଧ୍ୟ ମମତା ପ୍ରକାଶ ପାଇଲା । ଜାତିର ସର୍ବାଙ୍ଗୀନ ଉନ୍ନତି ପାଇଁ ଏକ ଗଠନମୂଳକ ମନୋଭାବ ଉଦ୍ରେକ ହେଲା । ଇତିହାସ ଓ ଐତିହ୍ୟ ପ୍ରତି ନବଶିକ୍ଷିତ ମାନସରେ ସଚେତନତା ସୃଷ୍ଟି ହେଲା । ଇଂରେଜ ଶାସନ ଆରମ୍ଭ କାଳରୁ ଅଖଣ୍ଡ ଓଡ଼ିଶା ବାରମ୍ବାର ଖଣ୍ଡବିଖଣ୍ଡ ହୋଇ ମାନ୍ଦ୍ରାଜ, ମଧ୍ୟପ୍ରଦେଶ, ବିହାର ଓ ବଙ୍ଗଳା ସହିତ ମିଶିଥିଲା ଏବଂ କୃତ୍ରିମ ରାଜନୈତିକ ବିଭାଜନ ଫଳରେ ସେହିସବୁ ଅଞ୍ଚଳରେ ଓଡ଼ିଆ ଭାଷାକୁ ଉଚ୍ଛେଦ କରିବା ପାଇଁ ଉଦ୍ୟମ ହୋଇଥିଲା । ୧୮୬୯/୭୦ ସାଲ ପର୍ଯ୍ୟନ୍ତ ଏହି ଉଦ୍ୟମ ନିରବିଚ୍ଛିନ୍ନ ଭାବରେ ଚାଲିଥିଲା । କିନ୍ତୁ ଏହି ସମୟରୁ ପାଶ୍ଚାତ୍ୟ ଶିକ୍ଷାପ୍ରାପ୍ତ ନୂତନ ଶିକ୍ଷିତ ଗୋଷ୍ଠୀର ଆବିର୍ଭାବ ଘଟିବାରୁ ଏବଂ ସେମାନଙ୍କ ଭିତରେ ଦେଶପ୍ରୀତି ଓ ମାତୃଭାଷା ପ୍ରୀତି ପ୍ରବଳ ପାଇବାରୁ ଓଡ଼ିଆ ଭାଷାକୁ ବିଲୋପ କରିବା ପାଇଁ ଯେଉଁ ଷଡ଼ଯନ୍ତ୍ର ଚକ୍ରାନ୍ତ ହୋଇଆସିଥିଲା ତା'ର ଏକରକମ ପୂର୍ଣ୍ଣଚ୍ଛେଦ ପଡ଼ିଲା । ଓଡ଼ିଆ ଭାଷାର ମୌଳିକତା ଓ ପ୍ରାଚୀନତାକୁ ଇଂରେଜ ସାହେବମାନେ ସ୍ୱୀକାର କରିବାକୁ ବାଧ୍ୟ ହେଲେ ଏବଂ ପ୍ରତିବେଶୀ ଅଣଓଡ଼ିଆମାନେ ମଧ୍ୟ ଏହାକୁ ମାନିନେଲେ । ଭାଷା ସୁରକ୍ଷାର ବିଜୟ ହିଁ ଯଥାର୍ଥରେ ଓଡ଼ିଆ ଜାତି ଭିତରେ ସୃଷ୍ଟିକଲା ଆତ୍ମବିଶ୍ୱାସ ଓ ସ୍ୱାଭିମାନ । ଭାଷା ସୁରକ୍ଷା ଆନ୍ଦୋଳନ ହିଁ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ଦେଲା ଅଭିନବ ପ୍ରେରଣା ।

ଏହି କାର୍ଯ୍ୟ ସାଧନର ପ୍ରଥମ ଉଦ୍ୟମ ସ୍ୱରୂପ ୧୮୭୫ ସାଲରେ ଡେଙ୍କାନାଳର ରାଜା ଶ୍ୟାମାନନ୍ଦ ଦେ, ଓଡ଼ିଶାର ତତ୍କାଳୀନ ଜଣେ ଡେପୁଟୀ ବିଚିତ୍ରାନନ୍ଦ ଦାସ, ବଙ୍ଗଳାର ଲେଫ୍‌ଟନାଣ୍ଟ୍ ଗଭର୍ଣ୍ଣର ଓଡ଼ିଶା ଆସିଥିବାବେଳେ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ ପାଇଁ ତାଙ୍କୁ ଗୋଟିଏ ସ୍ମାରକପତ୍ର ଦେଇଥିଲେ । କିନ୍ତୁ କୌଣସି ସଙ୍ଗଠିତ ଆନ୍ଦୋଳନ ନଥିବାରୁ ସେ ସ୍ମାରକପତ୍ରର କୌଣସି ମୂଲ୍ୟ ରହିଲାନାହିଁ । ଓଡ଼ିଶାରେ ସେତେବେଳେ କୌଣସି ରାଜନୈତିକ ମଞ୍ଚ ନଥିଲା । ଓଡ଼ିଆ ଭାଷାରକ୍ଷା ଆନ୍ଦୋଳନ ବେଳେ ଯେଉଁ କେତୋଟି ସଙ୍ଗଠନ ଗଢ଼ିଉଠିଲା, ଭାଷା ସଂକଟର ସମାଧାନ ପରେ କ୍ରମେ ସେସବୁ ନିସ୍ତେଜ ହୋଇ ଆସିଥିଲା । ଏ ପରିସ୍ଥିତିରେ ଖଣ୍ଡବିଖଣ୍ଡିତ ଓଡ଼ିଶାକୁ ଏକାଠି ମିଶାଇ ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବାପାଇଁ, ସ୍ମାରକପତ୍ର ବା ଆବେଦନର ଅଣିଆ ଗଦାକୁ ଯିବା ସାର ହେଲା ।

୧୮୯୫ ସାଲ ଜାନୁୟାରୀ ୧୫ ତାରିଖଦିନ ସେଣ୍ଟ୍ରାଲ ପ୍ରୋଭିନ୍‌ସେସ୍‌ର ଚିଫ୍ କମିଶନର ସମ୍ବଲପୁର କୋର୍ଟ କଚେରୀମାନଙ୍କରୁ ଓଡ଼ିଆ ଭାଷା ଉଚ୍ଛେଦ କରି ହିନ୍ଦୀ ଭାଷା ପ୍ରଚଳନ କଲେ । ସମ୍ବଲପୁର ବାସୀ ଓଡ଼ିଆ ଭାଷା ଉପରେ ଏହି ଅବାଞ୍ଛିତ ଆକ୍ରମଣ ଫଳରେ ଆନ୍ଦୋଳିତ ଓ ବିକ୍ଷୁବ୍ଧ ହୋଇଉଠିଲେ । ସମଗ୍ର ଓଡ଼ିଶାରେ ମଧ୍ୟ ଏହା ତୀବ୍ର ଅସନ୍ତୋଷର ସୂତ୍ରପାତ କରିଥିଲା । ଏହା ପରେ ପରେ କ୍ରମାଗତ ଭାବରେ ସମ୍ବଲପୁରରୁ ଓଡ଼ିଆ ଭାଷା ଉଚ୍ଛେଦର ବିରୋଧକରି ଉତ୍କଳ-ସଭା ପକ୍ଷରୁ କଟକରେ ସଭାସମିତିମାନ ଆରମ୍ଭ ହୋଇଗଲା । କିନ୍ତୁ ଭାରତ ସରକାର ବା ସେଣ୍ଟ୍ରାଲ ପ୍ରୋଭିନ୍‌ସେସ୍ ସରକାରଙ୍କ ଉପରେ ସେସବୁ କୌଣସି ରେଖାପାତ କରିବାରେ ସଫଳ ନହେଲେ ହେଁ, ଓଡ଼ିଆ ଭଷା ଭାଷୀ ବିଛିନ୍ନ ଅଞ୍ଚଳମାନଙ୍କର ଏକତ୍ରୀକରଣ ପାଇଁ ଓଡ଼ିଶାବାସୀଙ୍କ ସଂକଳ୍ପକୁ ଏହା ଦୃଢ଼ତର କରିଦେଲା । ଫଳରେ ସମ୍ବଲପୁର ଓ ଗଞ୍ଜାମକୁ ଓଡ଼ିଶା ସହିତ ମିଶାଇଦେବାକୁ ପ୍ରବଳ ଜନଜାଗରଣ ସୃଷ୍ଟି ହୋଇଥିଲା ।

ଭାଷାପ୍ରୀତି ଓ ଦେଶମିଶ୍ରଣକୁ କେନ୍ଦ୍ରକରି ଯେଉଁ ଜାତୀୟ ଅଭିଯାନ ଶାଣିତ ହୋଇଉଠୁଥିଲା ତା'ର ଏକ ବଳିଷ୍ଠ ଅଭିବ୍ୟକ୍ତି ହେଲା ମଧୁସୂଦନ ଦାସଙ୍କ ପ୍ରତିଷ୍ଠିତ 'ଉତ୍କଳ ସମ୍ମିଳନୀ' (୧୯୦୩) । ଏହି ସମ୍ମିଳନୀ ହେଲା ଓଡିଆ ଜାତିର ମିଳନ ମଞ୍ଚ । ଏହିଠାରୁ ଆରମ୍ଭ ହେଲା ସ୍ୱତନ୍ତ୍ର–ଉତ୍କଳ ପ୍ରଦେଶ ଗଠନ କରିବାର ଐତିହାସିକ ପଦଯାତ୍ରା । ମାତୃଭାଷା ଓ ମାତୃଭୂମି ଉଭୟକୁ ଜନନୀ ରୂପେ ବିବେଚନା କରାଗଲା । ପୂର୍ବର ଭାଷାକେନ୍ଦ୍ରିକ ଜାତୀୟତା ବୋଧ ଏହିଠାରୁ ସୀମାକେନ୍ଦ୍ରିକ ବା ସ୍ୱତନ୍ତ୍ର ପ୍ରଦେଶ ଗଠନ କେନ୍ଦ୍ରିକ ଜାତୀୟତା ବୋଧରେ ରୂପାନ୍ତରିତ ହୋଇଥିଲା । ୧୯୦୫ ସାଲରେ ସମ୍ବଲପୁର ଜିଲ୍ଲାକୁ ମଧ୍ୟପ୍ରଦେଶରୁ କାଢିଆଣି ବଙ୍ଗଳା ପ୍ରେସିଡେନ୍‌ସୀ ଅନ୍ତର୍ଗତ ଓଡିଶା ଡିଭିଜନ ସହିତ ମିଶାଇ ଦିଆଗଲା । ସମ୍ବଲପୁର ଜିଲ୍ଲାର ଓଡିଶା ସହିତ ମିଶ୍ରଣ, ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନ ସମ୍ପର୍କରେ ସେତେବେଳେ ସମସ୍ତଙ୍କର ଉତ୍ସାହ ଓ ଆଶାକୁ ବଢାଇ ଦେଇଥିଲା ।

ଶେଷରେ ଏହି ଆଶା, ବିଶ୍ୱାସ ଓ ସଂଗ୍ରାମର ଫଳଶ୍ରୁତି ସ୍ୱରୂପ ସର୍ବଶ୍ରୀ ମଧୁସୂଦନ ଦାସ, ଗୋପବନ୍ଧୁ ଦାସ, ଗୌରିଶଙ୍କର ରାୟ, ଖଲ୍ଲିକୋଟର ରାଜା ହରିହର ମର୍ଦ୍ଦରାଜ ଦେବ, ମୟୂରଭଞ୍ଜର ରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜଦେବଙ୍କ ଉଦ୍ୟମ ଫଳରେ ବ୍ରିଟିଶ ପାର୍ଲିଆମେଣ୍ଟରେ ଗଭର୍ଣ୍ଣମେଣ୍ଟ ଅଫ୍ ଇଣ୍ଡିଆ ଅର୍ଡର (କନ୍‌ଷ୍ଟିଚ୍ୟୁସନ ଅଫ ଓଡିଶା, ୧୯୩୬) ଅନୁସାରେ ୧୯୩୬ ଅପ୍ରେଲ ପହିଲାଦିନ ଭାଷାଭିତ୍ତିକ ଓଡିଶା ପ୍ରଦେଶ ଗଠିତ ହେଲା ।

ରାଜନୀତିକ ଦୃଷ୍ଟିକୋଣରୁ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ଏମାନେ ପ୍ରତ୍ୟକ୍ଷ ଭାବରେ ପ୍ରଚେଷ୍ଟା କରିଥିଲେ । କିନ୍ତୁ ଯେଉଁମାନେ ପରୋକ୍ଷ ଭାବରେ ରହି ନିର୍ଜୀବ, ନିଷ୍ପ୍ରାଣ ଓଡ଼ିଆର ପ୍ରାଣବାୟୁକୁ ଗତିଶୀଳ କରିଦେଇଥିଲେ, ସେମାନେ ହେଉଛନ୍ତି ତତ୍କାଳୀନ ସାହିତ୍ୟିକଗଣ । ସାହିତ୍ୟ ଏପରି ଏକ ମାଧ୍ୟମ ଯାହା ପାରୋକ୍ଷ ହେଲେ ମଧ୍ୟ ପ୍ରଭାବ ପକାଇଥାଏ । ତେଣୁ ଏହି ସମୟର ସାହିତ୍ୟିକମାନେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଦିଗରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ଗୋଟିଏ କଥାରେ କହିବାକୁ ଗଲେ ଊନବିଂଶ ଶତାବ୍ଦୀର ଶେଷ ଚରଣ ଭାଗର ଓଡ଼ିଆ ସାହିତ୍ୟ ଓଡ଼ିଶୀ ଜାତୀୟ ଭାବରେ ହୋଇଛି ପଲ୍ଲବିତ । ବସ୍ତୁତ ସାହିତ୍ୟ ସୃଷ୍ଟିରେ ରାଧାନାଥଙ୍କ ଚିଲିକା (୧୮୯୧) ମହାଯାତ୍ରା (୧୮୯୬) ଓ ଦରବାର (୧୮୯୭)ରେ ଏକ ବଳିଷ୍ଠ ଓଡ଼ିଶୀ ଜାତୀୟତାବୋଧ କେବଳ ସୃଷ୍ଟି ହୋଇନାହିଁ, ବରଂ ଏକ ବୃକ୍ଷରେ ପରିଣତ ହୋଇଛି । ଏହି ଭାବନା ନାନାଦି ରାଜନୈତିକ ଓ ଐତିହାସିକ ଘଟଣାବଳୀକୁ ଅବଲମ୍ବନ କରି ସତ୍ୟବାଦୀ ଯୁଗରେ ଏକ ବିପୁଳ ବନସ୍ପତିରେ ପରିଣତ ହୋଇଛି । ମୋଟ ଉପରେ ୧୮୯୧ ସାଲଠାରୁ ୧୯୨୧ ସାଲ ପର୍ଯ୍ୟନ୍ତ ଓଡ଼ିଶୀ ଜାତୀୟ ଭାବନା ଅଧିକ ପ୍ରାଣବନ୍ତ ହୋଇଉଠିଛି । ଗତ ଶତାବ୍ଦୀର ନଅଙ୍କ ଦୁର୍ଭିକ୍ଷ କାଳରୁ ଭାଷା ବିରୋଧୀ ଓ ଭାଷା ସୁରକ୍ଷା ଆନ୍ଦୋଳନ ବାଟଦେଇ ଭାରତୀୟ ସ୍ୱାଧୀନତା ଆନ୍ଦୋଳନର ସଫଳ ପରିପ୍ରକାଶ ୧୯୨୧ ସାଲ ପର୍ଯ୍ୟନ୍ତ ଓଡ଼ିଶାର ଜାତୀୟ ଜୀବନରେ ଯେଉଁ ସଙ୍କଟ ଓ ତା'କୁ ସାମ୍ନା କରିବାର ପ୍ରତିରୋଧ ଶକ୍ତି ପ୍ରକଟିତ ହୋଇଛି ତାହାରି ଉପରେ ଏକ ବଳିଷ୍ଠ ସାହିତ୍ୟ ସୌଧ ଗଢ଼ିଉଠିଛି । କିନ୍ତୁ ୧୯୨୧ ସାଲ ବେଳକୁ ସତ୍ୟବାଦୀ ବନବିହାରର ସ୍ରଷ୍ଟାଗଣ ପ୍ରାୟ ଜାତୀୟ ମହାସ୍ରୋତରେ ଝାସ ଦେବା ଫଳରେ ସେମାନଙ୍କ ସୃଷ୍ଟି ପ୍ରକ୍ରିୟାରେ ଓଡ଼ିଶାର ସ୍ୱପ୍ନ ଅବିମିଶ୍ର ହୋଇ ନରହି ଭାରତୀୟ ସ୍ୱାଧୀନତାର ଚିନ୍ତା ଓ ଚେତନାକୁ ଆବୋରି ବସିଛି । ତଥାପି ମଧ୍ୟ ଏମାନେ ଓଡ଼ିଶା ପ୍ରଦେଶ ଗଠନର ଦୁର୍ବାର ଭୂମିକାକୁ ଗୌଣ କରିନାହାନ୍ତି । ଏମାନଙ୍କ ପରବର୍ତ୍ତୀକାଳୀନ ଲେଖାବଳୀରେ ଓଡ଼ିଶା ଓ ଭାରତ ସମାନ ଗୁରୁତ୍ୱ ବହନ କରିଛି । କିନ୍ତୁ ସତ୍ୟବାଦୀର ବହୁ ସତୀର୍ଥ ଓ ଏହି ଉଗ୍ରଜାତୀୟତାବାଦୀ ଧାରାର ବଳିଷ୍ଠ ସମର୍ଥକମାନେ ପ୍ରାୟ ୧୯୩୫ ସାଲ ପର୍ଯ୍ୟନ୍ତ ସେମାନଙ୍କ ସୃଷ୍ଟି ପ୍ରକ୍ରିୟାରେ ଓଡ଼ିଶାର ଐତିହ୍ୟ, ଇତିହାସ, କାହାଣୀ, କିମ୍ବଦନ୍ତୀକୁ ଗୁରୁତ୍ୱ ଦେଇ ଏକ ଉଦ୍‌ବୋଧନଶୀଳ ସାହିତ୍ୟ ସୃଷ୍ଟି ଦିଗରେ ପ୍ରୟାସ କରିଛନ୍ତି । ତେଣୁ ଏହି ଜାତୀୟତା'ବାଦୀ ଯୁଗର ପରିସର ପରିବ୍ୟାପ୍ତ ହୋଇ ଓଡ଼ିଶା ପ୍ରଦେଶ ଗଠନ ତାରିଖ ପର୍ଯ୍ୟନ୍ତ ସମ୍ପ୍ରସାରିତ ହୋଇ ରହିଛି ବୋଲି ମାନିବାକୁ ହେବ । ଏପରିକି ଏହି ସମୟରେ ଉତ୍କଟ ରୋମାଣ୍ଟିକ୍ ଦୃଷ୍ଟିଭଙ୍ଗୀକୁ ନେଇ ସବୁଜ ଗୋଷ୍ଠୀ ରଚନାର ସଂଗଠିତ

ପ୍ରଭାବ ଉତ୍କଳୀୟ ଜାତୀୟତାର ଚିନ୍ତାଧାରାକୁ ଆସସାତ୍ କରିପାରିନାହିଁ । ବରଂ ଏ ପ୍ରଭାବ ଅତିସ୍ପଷ୍ଟ ଭାବେ କୁନ୍ତଳା କୁମାରୀଙ୍କ 'ଆହ୍ୱାନ', 'ରଡ଼ଜାତ କୃଷକ' ଓ ଉପନ୍ୟାସ ମାଳାରେ କୃଷ୍ଣମୋହନ ପଟ୍ଟନାୟକଙ୍କ କବିତାବଳୀରେ, ଗୋପବନ୍ଧୁଙ୍କ 'ଧର୍ମପଦ' 'ବନ୍ଦୀର ଆତ୍ମକଥା'ରେ ପଦ୍ମଚରଣଙ୍କ 'ଧଉଳି ପାହାଡ଼', ମାଧ୍ୱାଧର ମାନସିଂଙ୍କ 'ସାଧବଝିଅ', 'ମହାନଦୀରେ ଜ୍ୟୋସ୍ନା ବିହାର' କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କ 'ଆହୁତି' (ପାଇକମାନଙ୍କ ବୀରତ୍ୱକୁ ନେଇ ରଚିତ କବିତା) କାହ୍ନୁ ଚରଣଙ୍କ 'ବାଲିରଜା' ଆଦିରେ ଏହି ଅଭିମୁଖ୍ୟ ସ୍ପଷ୍ଟ ଅବଧାରିତ ।

ଓଡ଼ିଆ ସାହିତ୍ୟର ଅନ୍ୟାନ୍ୟ ବିଭାବ ପରି ନାଟକ ମଧ୍ୟ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା । ଓଡ଼ିଆ ନାଟକର ସୃଷ୍ଟି ଊନବିଂଶ ଶତାବ୍ଦୀର ଶେଷ ଭାଗରୁ ହିଁ ହୋଇଛି । ସୃଷ୍ଟିଆରମ୍ଭରୁ ହିଁ ନାଟକ ଜାତୀୟ ଚେତନାରେ ହୋଇଛି ଉଦ୍‌ବୁଦ୍ଧ । ଏହି ସମୟର ଓଡ଼ିଆ ସାହିତ୍ୟରେ ଓଡ଼ିଶାର ଜାତୀୟ ଜୀବନ ପାଇଁ ଯେଉଁ ସବୁ ସ୍ପଷ୍ଟ ଆହ୍ୱାନ ଥିଲା ତନ୍ମଧ୍ୟରୁ ଅନ୍ଧ କୁସଂସ୍କାର ଓ ରକ୍ଷଣଶୀଳତା ବିରୁଦ୍ଧରେ ଆହ୍ୱାନ, ଅତୀତ ଐତିହ୍ୟର ସ୍ମୃତିଶ୍ମରଣରେ ଜନସଚେତନତା ସୃଷ୍ଟିପାଇଁ ଉଦ୍ୟମ ଓ ମାତୃଭୂମି, ମାତୃଭାଷାର ବନ୍ଦନା ଅନ୍ୟତମ । ସେଥିପାଇଁ ମାତୃଭୂମି ଓ ମାତୃଭାଷାର ବନ୍ଦନାକରି ଗଙ୍ଗାଧର ମେହେର ଗାଇ ଉଠିଥିଲେ–

"ମାତୃଭୂମି ମାତୃଭାଷାର ମମତା ଯା ହୃଦେ ଜନମି ନାହିଁ;
ତାକୁ ଯଦି ଜ୍ଞାନୀ ଗଣରେ ଗଣିବା ଅଜ୍ଞାନ ରହିବେ କାହିଁ ?"

ମାତୃଭୂମି ଓଡ଼ିଶା ଓ ମାତୃଭାଷା ଓଡ଼ିଆ ପ୍ରତି ଉଦ୍‌ବେଗ ଏ ସମୟର ଶୌଣ୍ଡକବି ଗୋବିନ୍ଦ ରଥଙ୍କ କବିତାରେ ମଧ୍ୟ ସୃଷ୍ଟି ହୋଇଛି । ଏହି ସମୟର ନାଟ୍ୟକାର ରାମଶଙ୍କରଙ୍କ ନାଟକଗୁଡ଼ିକରେ ମଧ୍ୟ ଉତ୍କଳୀୟତାର ଉପାଦାନ ପ୍ରଚୁରଭାବେ ଭରି ରହିଛି । ତତ୍କାଳୀନ ସମୟର ପ୍ରାଣସ୍ପନ୍ଦନ ହିଁ ତାଙ୍କୁ ଉତ୍ସାହିତ କରିଛି । ନଅଙ୍କ ଦୁର୍ଭିକ୍ଷ ଓ ଓଡ଼ିଆ ଭାଷାବିଲୋପ ଆନ୍ଦୋଳନ ପରେ ଏ ଦେଶର ଲୋକଚିତ୍ତରେ ଯେଉଁ ଏକ ଅପୂର୍ବ ଜାତୀୟଭାବ ଦେଖାଯାଇଥିଲା, ବାଲେଶ୍ୱର ପଣ୍ଡିତ କାନ୍ତିଚନ୍ଦ୍ରଙ୍କ ଓଡ଼ିଆ ଭାଷା ବିରୁଦ୍ଧରେ ଏକ ପୁସ୍ତିକା ବିରୁଦ୍ଧରେ ହେତମାଷ୍ଟର ଦ୍ୱିଜ ଦାସ ଦତ୍ତଙ୍କ ୩-୧-୧୮୮୦ ସାଲରେ "ଓଡ଼ିଆ ଭାଷା ବଙ୍ଗ ଭାଷାର ଅପଭ୍ରଂଶ ଭାଷା ନୁହେଁ" ଉପରେ ବକ୍ତୃତା ପରି ସେ ସମୟରେ କେତେକ ଲୋକ ଜାତୀୟ ଐକ୍ୟ ସମ୍ପାଦନ ଉପରେ ଅଭିମତ ଦେଇଥିବାର ଦେଖିବାକୁ ମିଳେ । ୧୮୭୭ ସାଲରେ ପୁରୀ ରାଜାଙ୍କ କ୍ଷମତା ଉପରେ ସରକାରଙ୍କ ହସ୍ତକ୍ଷେପ ସେ ସମୟରେ କେହି କେହି ଅନୁମୋଦନ କରିପାରିନଥିଲେ । ଏପରିକି ଦିବ୍ୟସିଂହ ଦେବଙ୍କୁ ଖୁନ୍‌ର ଦୋଷରେ ଅଭିଯୁକ୍ତ କଲାବେଳେ ଅନେକେ ଏହା ବିରୁଦ୍ଧରେ ଲେଖିଥିଲେ । ଏଥିରୁ ପୁରୀ ରାଜାଙ୍କ ପ୍ରତି ଏ ଦେଶର ଲୋକଙ୍କ ଗଭୀର ଅନୁରକ୍ତି ସ୍ୱତଃ ପ୍ରକଟିତ ହୋଇଉଠିଛି । ଲୋକଚିତ୍ତରେ ଯେତେବେଳେ ଏ ଜାତୀୟଭାବ ଖେଳିଯାଉଥିଲା ସେତେବେଳେ ଅଧଃପତିତ ଓଡ଼ିଆ ଜାତିକୁ ନୂତନ ମନ୍ତ୍ରରେ ଉଜ୍ଜୀବିତ କରିବା ପାଇଁ ଜାତିର ଗୌରବୋଜ୍ଜ୍ୱଳ ଅତୀତ ଇତିହାସକୁ ନାଟକ ମାଧ୍ୟମରେ ଉପସ୍ଥାପନ କରିବାର ବଳବତୀ କାମନା ରାମଶଙ୍କରଙ୍କ ମନରେ ଉଦିତ ହୋଇଥିବ ବୋ... ନିଃସନ୍ଦେହରେ କୁହାଯାଇପାରେ । ଓଡ଼ିଆ ରାଜାଙ୍କ ଅ... କ୍ଷମତା, ଅବିସ୍ମରଣୀୟ କରୁଣା, ଜାତିପ୍ରୀତି, ଓଡ଼ିଆ ଜାତି... କଠୋର ଅଗ୍ନିଶପଥ ଏବଂ ଅନନ୍ୟ ସମର କୌଶଳର ଚିତ୍ର ଦେଖା... ଯାଇ ନାଟ୍ୟକାର ଏପରି ଏକ କଥାବସ୍ତୁ ନିର୍ବାଚିତ କରିଥି... ରାମଶଙ୍କରଙ୍କ 'କାଞ୍ଚିକାବେରୀ' ନାଟକ ଉତ୍କଳର ଏକ ପର... ଗୌରବାବହ ଅଧ୍ୟାୟର ଉଦ୍‌ଘାଟନ ଦ୍ୱାରା ଓଡ଼ି... ଯୁବମାନସରେ ଦେଶାତ୍ମବୋଧର ଜାଗରଣ ଖେଳାଇ ଦେବା... ସମର୍ଥ ହୋଇଛି ।

ସମାଜ ସଂସ୍କାରର ଆଦର୍ଶ ନେଇ ରାମଶଙ୍କରଙ୍କ 'ଚୈତନ୍ୟଲୀଳା' ନାଟକରେ ଫୁଟିଉଠିଛି ଚୈତନ୍ୟଙ୍କ ଏକ ଅଭିନ... ଆଧୁନିକ ରୂପ ଯାହା ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଖୁବ୍... ସମ୍ଭବପର । ୧୬ଶ ଶତାବ୍ଦୀର ଚୈତନ୍ୟଙ୍କ ରୂପସହିତ ଏ ରୂପ... ବିଶେଷ କୌଣସି ସମ୍ପର୍କ ନାହିଁ । ଜାତିର ସାମୂହିକ ମଙ୍ଗ... ସାଧନ ପାଇଁ ଏକତାର ଆବଶ୍ୟକତା, କୁପ୍ରଥାର ବିନାଶସାଧ... ତଥା କୁସଂସ୍କାରର ଦୂରୀକରଣ, ଜାତି ବିଦ୍ୱେଷ ଭାବର ବିଲୋ... ସାଧନ – ଏମିତି ଜାତି–ସଂଗଠନକାରୀ ନୂତନ ଚିନ୍ତାଧାରା... ଉଦ୍‌ବେଳିତ ତଦାନୀନ୍ତନ ଜନତା ସମ୍ମୁଖରେ ଚୈତନ୍ୟଙ୍କ... ସଂସ୍କାରକ ରୂପ ଓ ଜଣେ ଜାତୀୟ ବୀରର ରୂପ ଏ ନାଟକରେ... ଉପସ୍ଥାପିତ ହୋଇଛି ।

ରାମଶଙ୍କରଙ୍କର ଅନ୍ୟ ଦୁଇଟି ନାଟକ ମଧ୍ୟ ଦେଶପ୍ରେମ ଓ... ସଂସ୍କାରଭାବ ଉପରେ ଦଣ୍ଡାୟମାନ । 'କାଞ୍ଚନମାଳୀ' ଓଡ଼ି... ଭାଷାରେ ସର୍ବପ୍ରଥମ ରାଜନୈତିକ ନାଟକ । ଉତ୍କଳ ସମ୍ମିଳନୀ... ଜାତୀୟ ଚେତନା ଏବଂ ମଧ୍ୟପ୍ରଦେଶ ସହିତ ଉତ୍କଳର ମିଶ୍ର... ପ୍ରସ୍ତାବକୁ କେନ୍ଦ୍ରକରି ଏହା ରଚିତ ହୋଇଛି । ଜାତୀୟ ଏକ... ପ୍ରତିଷ୍ଠା, ପାଶ୍ଚାତ୍ୟ ଶିକ୍ଷାର ପ୍ରସାର, ସ୍ତ୍ରୀ ଜାତିର ଉନ୍ନତି ବିଧା... ଅସ୍ପୃଶ୍ୟତା ନିବାରଣ ଓ ଅସବର୍ଣ୍ଣ ବିବାହ ଆଦି ସଂସ୍କାରମୂଳ... କାର୍ଯ୍ୟଦ୍ୱାରା ଜାତୀୟ ଜୀବନର ନବନିର୍ମାଣ ଏ ନାଟକର ପ୍ରଧା... ଉପପାଦ୍ୟ ବିଷୟ ।

ଖଡ଼ିଆଳର ରାଜକୁମାରଙ୍କ ଓଡ଼ିଆ ଭାଷା ପ୍ରତି ପ୍ରୀ... ଅସୀମ । ଅଭିନୟ ଦ୍ୱାରା ଅଭିନେତାର ସାହସ ଓ ଶୌ... ସମ୍ପାଦନ ଲାଗି, ଜାତିକୁ ଭାରତ ସମକ୍ଷରେ, ପ୍ରତିବେଶୀ ଜାତି... ଉନ୍ନତ ବକ୍ଷରେ ଠିଆ କରାଇବା ଲାଗି ସେ ବହୁ ଅର୍ଥବ୍ୟୟ କରି... 'ବିକ୍ରମ ଥିଏଟର' ସୃଷ୍ଟି କରିଥିଲେ । ତାଙ୍କ ପ୍ରଣୀତ 'ଉତ୍କଳ ଦୁର୍ଦ୍ଦ... ନାଟକ'ରେ ଉତ୍କଳ ଜନନୀ ପ୍ରତି ଉଚ୍ଛ୍ୱସିତ ଉପାସନା, ଓଡ଼ି... ଭାଷା ପ୍ରତି ସୀମାହୀନ ଆବେଗ ସର୍ବୋପରି ଉତ୍କଳ ଜନନୀ... ସର୍ବସମକ୍ଷରେ ବଡ଼କରି ଥୋଇବାର ଆକୁଳତା ପ୍ରତିଫଳିତ ହୋଇଥାଏ ।

ଭିକାରୀ ଚରଣଙ୍କର 'କଟକ ବିଜୟ' ନାଟକଟି ଇଂରେଜମାନଙ୍କ... ସ୍ତୁତିରେ ପୂର୍ଣ୍ଣ ଥିବାରୁ ସମାଲୋଚକମାନେ ଏହାକୁ 'ଚାଟୁକା... ନାଟକ ଭାବେ ଅଭିହିତ କରିଛନ୍ତି । କିନ୍ତୁ 'କଟକ ବିଜୟ' (୧୯୦୭)ରେ ଯେଉଁ ଭଳି ଓଡ଼ିଆ ଜାତୀୟତାର ପରିପ୍ରକାଶ ପାଇ... ତାହାଥିଲା ତତ୍କାଳୀନ ସମୟର ପ୍ରାଣସ୍ପନ୍ଦନ । ୧୮୭୬ ସାଲରେ...

ପାଠ୍ୟପୁସ୍ତକରୁ ଓଡ଼ିଆ ଭାଷା ଉଠାଇଦେବା ପରେ ଏହା ବିରୁଦ୍ଧରେ ଯେଉଁ ସ୍ୱର ଉଠିଥିଲା, ତତ୍କାଳୀନ ଭାରତର ଭାଇସ୍‌ରାୟ ଲର୍ଡ କର୍ଜନଙ୍କ ସମ୍ମୁଖରେ ମଧୁସୂଦନ ଦାସ ତାହା ଉପସ୍ଥାପନ କରିଥିଲେ। ଏହା ସହିତ ଓଡ଼ିଆ ଭାଷାଭାଷୀ ଅଞ୍ଚଳମାନଙ୍କର ଏକତ୍ରୀକରଣର ବହୁପୋଷିତ ଦାବୀ ସମ୍ପର୍କରେ ଅନୁଯୋଗ କରିଥିଲେ। ସେତେବେଳେ ଭାଷାଭିତ୍ତିରେ ପ୍ରଦେଶମାନଙ୍କର ପୁନର୍ଗଠନ ପ୍ରସଙ୍ଗ, ଭାରତ ସରକାର ପରୀକ୍ଷା କରି ଦେଖୁଥିଲେ। ଏପରି ପରିସ୍ଥିତିରେ ନାଟ୍ୟକାର ନିଜର ପଥପ୍ରଦର୍ଶକ ମଧୁସୂଦନଙ୍କ ପ୍ରେରଣାରେ 'କଟକ ବିଜୟ' ନାଟକଟି ରଚନା କରିଥିବାର ମନେହୁଏ। ତେଣୁ ଇଂରେଜମାନଙ୍କ ତୋଷାମୋଦ ଏଥିରେ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଗ୍ରହଣ କରିଛି। ନାଟକଟିକୁ 'ବିଜାତୀୟ' କହିବାର କୌଣସି ପ୍ରାସଙ୍ଗିକତା ନାହିଁ କାରଣ ନାଟ୍ୟକାର ବିଦେଶୀ ସୈନିକଙ୍କ ମୁହଁରେ ଓଡ଼ିଆ କାରିଗରୀର ପ୍ରଂଶସା କରାଇ କହିଛନ୍ତି "ଓଡ଼ିଆମାନେ ଭାରୀ ଶିଳ୍ପୀ, ନାନାରକମର ଶିଳ୍ପ କାର୍ଯ୍ୟ କରନ୍ତି।.........କଟକର ତାରକାସୀକାମ ଦେଖିଲେ ଆଖିବୁଜି ହୋଇଯିବ।" ଓଡ଼ିଆମାନଙ୍କର କାରିଗରୀ ଜ୍ଞାନର ପ୍ରଶଂସା, ସମ୍ମାନ ରକ୍ଷା ପାଇଁ ପଦ୍ମାବତୀ ଓ ପୁରାଙ୍ଗନାମାନଙ୍କର ଆତ୍ମବିସର୍ଜନ ଓ ସୈନ୍ୟମାନଙ୍କ ପ୍ରତି ବାଲାଜୀଙ୍କ ଉଦ୍‌ବୋଧନ ଅନ୍ତରାଳରେ ଏକ ମୃଦୁ ମଧୁର ଜାତୀୟ ଭାବର ହିଲ୍ଲୋଳ ଦର୍ଶକର ପ୍ରାଣକୁ ସ୍ପର୍ଶ କରିଥାଏ। ଏହି ନାଟକରେ ଥିବା ଓଡ଼ିଆମାନଙ୍କର ଦୁର୍ବଳତାର ଚିତ୍ର ସୁପ୍ତ ଓଡ଼ିଆଜାତି ପ୍ରତି ବ୍ୟଙ୍ଗାତ୍ମକ ଉକ୍ତି ହୋଇପାରେ। କାରଣ ମୃତ ଅତୀତକୁ ଧରି ଓଡ଼ିଆର ବଞ୍ଚିରହିବାପରି ଏକ ହୀନ ଅଭୀପ୍‌ସା ପ୍ରତି ଶାଣିତ ବ୍ୟଙ୍ଗ ପ୍ରୟୋଗ ତାଙ୍କର 'ଶୋଇଥା ଶୋଇଥା' କବିତାରେ ଦୃଷ୍ଟିଗୋଚର ହୁଏ।

ଭାରତଜାତୀୟ ମହାସମିତି ଓ ଉତ୍କଳସମ୍ମିଳନୀ ମାଧ୍ୟମରେ ଯେଉଁ ଉଗ୍ର ଜାତୀୟ ଭାବ ଏଦେଶର ଲୋକଙ୍କ ଭିତରେ ଖେଳି ଯାଇଥିଲା ତା'ର ସାଂସ୍କୃତିକ ପରିପ୍ରକାଶ ହେଉଛି ସତ୍ୟବାଦୀର ବନବିଦ୍ୟାଳୟ – ସତ୍ୟବାଦୀ ସାହିତ୍ୟ ସାଧକଙ୍କ ରଚନାବଳୀ ହେଉଛି ସେଇ ନବଜାତୀୟଚେତନାର କୃଷ୍ଟିଗତ ଅଭିବ୍ୟକ୍ତି ମାତ୍ର। ୧୮୭୦ ସାଲରୁ ଭାଷା ସୁରକ୍ଷା ଆନ୍ଦୋଳନ ମଧ୍ୟ ଦେଇ ଯେଉଁ ଭାଷା କୈନ୍ଦ୍ରିକ ଜାତୀୟତାବୋଧ ସୃଷ୍ଟି ହୋଇଥିଲା ୧୯୦୩ ସାଲ 'ଉତ୍କଳ ସମ୍ମିଳନୀଠାରୁ' ତାହା ରୂପାନ୍ତରିତ ହୋଇଗଲା ସୀମାକୈନ୍ଦ୍ରିକ ଜାତୀୟତାବୋଧ ବା ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଭିତ୍ତିକ ଜାତୀୟତାବୋଧରେ ସତ୍ୟବାଦୀର ପଞ୍ଚସଖା ରାଜନୈତିକ କାର୍ଯ୍ୟକଳାପ ଦୃଷ୍ଟିରୁ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶଗଠନ ପାଇଁ ଯେତିକି ଚେଷ୍ଟା କରିଥିଲେ ନିଜର ରଚନାବଳୀ ମାଧ୍ୟମରେ ଏଥିପାଇଁ ପ୍ରେରଣା ଓ ଉତ୍ସାହ ସୃଷ୍ଟି କରିବାରେ ଥିଲେ ଅଧିକ ପ୍ରୟାସୀ।

୧୯୦୩ ସାଲରେ ମଧୁସୂଦନ ଦାସଙ୍କ 'ଉତ୍କଳ ସମ୍ମିଳନୀର ପ୍ରତିଷ୍ଠା ଓଡ଼ିଶାର ରାଜନୀତିକ ଇତିହାସର ଏକ ଗୁରୁତ୍ୱପୂର୍ଣ୍ଣ ଅଧ୍ୟାୟ। ଓଡ଼ିଆ ଜାତି କେବଳ ବଞ୍ଚିରହିବା ପାଇଁ ନୁହେଁ ନାହିଁ, ସେ ଅନ୍ୟ ଭଳି ତା'ର ସ୍ୱାତନ୍ତ୍ର୍ୟ, ଗର୍ବ ଓ ଗୌରବବୋଧ ନେଇ ତିଷ୍ଠା କରିବାକୁ ଚାହେଁ ଏହାଥିଲା ଉତ୍କଳ ସମ୍ମିଳନୀର ଉଦ୍ଦେଶ୍ୟ।

୧୯୦୫ ସାଲର ବଙ୍ଗଭଙ୍ଗ ଆନ୍ଦୋଳନ ସମୟରେ ବଙ୍ଗୀୟ ଯୁବ ମାନସର ବଳିଷ୍ଠ ଉଦ୍‌ବେଳନ, ଜାତିପାଇଁ ଆତ୍ମାହୁତିର ବିପୁଳ ଦୃଷ୍ଟାନ୍ତ, କ୍ଷୁଦିରାମ ଓ ଅରବିନ୍ଦ ଘୋଷଙ୍କ ସନ୍ତ୍ରାସବାଦୀ କାର୍ଯ୍ୟକ୍ରମ ଏହି ସ୍ୱାତନ୍ତ୍ର୍ୟ–ଭାବଧାରାକୁ ଅଧିକ ତୀବ୍ରକରି ତୋଳିଥିଲା। ଓଡ଼ିଆମାନଙ୍କୁ ସମଭାବାପନ୍ନ ହେବା ପାଇଁ ପ୍ରରୋଚନା ଦେଇଥିଲା ବଙ୍ଗାଳୀମାନଙ୍କ ଅନ୍ତର୍ଗତ ପ୍ରାଦେଶିକତାର ବିସ୍ଫୋରଣ। ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିୟାନ ଧର୍ମଭିତ୍ତିକ ଭେଦରେଖାକୁ ନିଶ୍ଚିହ୍ନକରି ଏକସ୍ୱରରେ ପ୍ରଦେଶ ଓ ମାତୃଭାଷାର ଗୌରବଗାନ ଏହି ଜାତୀୟତାବୋଧର ଥିଲା ଚରମ ଆଭିମୁଖ୍ୟ। ମୃତକଳ୍ପ ଓଡ଼ିଆମାନଙ୍କୁ ଜାଗରିତ କରିବାପାଇଁ ସେମାନଙ୍କ ହୃଦୟରେ ବଳିଷ୍ଠ ଆଶା ଓ ବିଶ୍ୱାସ ସୃଷ୍ଟି କରିବାପାଇଁ ଇତିହାସ ସେମାନଙ୍କ ନିକଟରେ ଥିଲା ଏକମାତ୍ର ଆୟୁଧ। ମୋଟଉପରେ କହିବାକୁଗଲେ ବ୍ୟକ୍ତିଗତ ଜୀବନରେ ଦେଶସେବା, ଜନସେବା, ଆଦର୍ଶ ପ୍ରଣାଳୀରେ ଶିକ୍ଷାପ୍ରଦାନ, ସମଗ୍ର ଉତ୍କଳବାସୀଙ୍କୁ ଭାଷା ଓ ସଂସ୍କୃତି ସଚେତନ କରାଇବା, ଓଡ଼ିଶାର ଐତିହ୍ୟ ଓ ଗୌରବ ବୋଧକୁ ଓଡ଼ିଶା ତଥା ଓଡ଼ିଶା ବାହାରେ ପ୍ରତିଷ୍ଠା କରାଇବା, ଉତ୍କଳର ବଡ଼ଠାକୁର ଜଗନ୍ନାଥଙ୍କୁ କେନ୍ଦ୍ରକରି ଓଡ଼ିଶାର ସାଂସ୍କୃତିକ ଚେତନାର ଉତ୍ତରଣ ଥିଲା, ଏମାନଙ୍କର କାମ୍ୟ। ସାହିତ୍ୟ ମାଧ୍ୟମରେ ଏସବୁ ପ୍ରକାଶକରି ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ପାଇଁ ପରୋକ୍ଷ ଭାବେ ପ୍ରେରଣା ଯୋଗାଇ ଦେଇଥିଲେ ସତ୍ୟବାଦୀର ସାହିତ୍ୟିକଗଣ। କୃପାସିନ୍ଧୁ ଐତିହାସିକ ଗବେଷଣା ମାଧ୍ୟମରେ। ପଣ୍ଡିତ ନୀଳକଣ୍ଠ ପ୍ରବନ୍ଧ ଓ ଆଲୋଚନା ମାଧ୍ୟମରେ, ଗୋପବନ୍ଧୁ କବିତା ମାଧ୍ୟମରେ ଉତ୍କଳୀୟ ଜାତୀୟତାର ବାତାବରଣ ସୃଷ୍ଟି କରିବାକୁ ଉଦ୍ୟମ କରିଥିବା ବେଳେ ନାଟକ କ୍ଷେତ୍ରରେ ଗୋଦାବରୀଶ ଥିଲେ ନିରଙ୍କୁଶ। ତାଙ୍କର 'ପୁରୁଷୋତ୍ତମଦେବ' ଓ 'ମୁକୁନ୍ଦଦେବ' ନାଟକ ଦୁଇଟି ଓଡ଼ିଆର ଜାତୀୟ ଇତିହାସର ଦୁଇଟି ମୂଲ୍ୟବାନ ଗ୍ରନ୍ଥ। କିମ୍ବଦନ୍ତୀ ଓ ଇତିହାସର ସମନ୍ୱରେ ଗଢ଼ି ଉଠିଥିବା ପୁରୁଷୋତ୍ତମ ଦେବ ଓ ମୁକୁନ୍ଦ ଦେବଙ୍କ ବ୍ୟକ୍ତିତ୍ୱର ରୂପାୟନ ହିଁ ଏହି ଉଭୟ ନାଟକର ମୌଳିକ ଲକ୍ଷ୍ୟ ବ୍ୟକ୍ତିର ଐତିହାସିକ ବ୍ୟକ୍ତିତ୍ୱ ଏଥିରେ ପ୍ରଧାନ। ଓଡ଼ିଶାର ଗୌରବାବହ ସାମରିକ ଇତିହାସ, ଓଡ଼ିଆ ବୀରମାନଙ୍କର ଦିଗ୍‌ବିଜୟ ଗାଥା ସର୍ବଭାରତୀୟ ସ୍ତରରେ ଥିଲା ଗୌଣ। ମହାନ୍‌ବୀର ଖାରବେଳଙ୍କ କୀର୍ତ୍ତି ଜାତୀୟ ଇତିହାସରେ ଯଥୋଚିତ ସ୍ଥାନ ଲାଭ କରିନଥିଲା। ମଧ୍ୟଯୁଗରେ ବହୁ ଶତାବ୍ଦୀଧରି ଆଫଗାନ୍ ଓ ମୋଗଲ ଆକ୍ରମଣରୁ ଓଡ଼ିଶାର ସୀମା ଓ ସମୃଦ୍ଧିକୁ ରକ୍ଷା କରିଥିବା ଓ ସେଥିପାଇଁ ପ୍ରାଣପାତ କରିଥିବା ଓଡ଼ିଆ ରାଜବଂଶୀୟଙ୍କ ନାମମଧ୍ୟ ଭାରତୀୟ ଇତିହାସରେ ଅଙ୍କିତ ହୋଇନଥିଲା କିମ୍ବା ବ୍ରିଟିଶମାନଙ୍କ ବିରୁଦ୍ଧରେ ସଂଗ୍ରାମ କରି ନିର୍ଯ୍ୟାତିତ ଭାବରେ ପ୍ରାଣପାତ କରିଥିବା ଜୟୀ ରାଜଗୁରୁ ପ୍ରଭୃତିଙ୍କ ନାମକୁ ମଧ୍ୟ ଭାରତୀୟ ଇତିହାସକାରମାନେ ସଂଗ୍ରାମୀ ତାଲିକାରେ ଲିପିବଦ୍ଧ କରିବାର ଇଚ୍ଛାକରିନଥିଲେ। ଜାତୀୟ ଆଦର୍ଶ, ଆତ୍ମସମ୍ମାନ ବୋଧ ଓ ଐତିହାସିକ ଗୌରବ ନଥିଲେ କୌଣସି ଜାତି ପ୍ରାଣରେ ସଙ୍ଗଠନର ସ୍ପୃହା ଜାତ ହୁଏନାହିଁ। ଓଡ଼ିଶାବାସୀଙ୍କର ଏହି ଅଭାବକୁ ଗୋଦାବରୀଶ ମର୍ମେ ମର୍ମେ ଅନୁଭବ କରିଥିଲେ। ସେଥିପାଇଁ ଓଡ଼ିଶାର ଅତୀତ ଐତିହ୍ୟକୁ

ନେଇ ରଚନା କରିଥିଲେ 'ମୁକୁନ୍ଦଦେବ' ଓ 'ପୁରୁଷୋତ୍ତମ ଦେବ' ନାଟକ ।

'ମୁକୁନ୍ଦଦେବ' ନାଟକର ମୁକୁନ୍ଦଦେବ ନିରାଟ ବାସ୍ତବବାଦୀ, କାର୍ଯ୍ୟଦକ୍ଷ, ରଣକୁଶଳ ଓ ବିଚକ୍ଷଣ ରାଜନୀତିଜ୍ଞ । ସର୍ବୋପରି ସେ ଜଣେ ବୀର । କିନ୍ତୁ ତାଙ୍କର ବୀରତ୍ୱ ଆତ୍ମ ପ୍ରତିଷ୍ଠା ପାଇଁ ନୁହେଁ । ଦେଶ ଓ ଜାତି ପାଇଁ ତାଙ୍କ ଦେହର ପ୍ରତି ରକ୍ତବିନ୍ଦୁ ଉତ୍ସର୍ଗୀକୃତ । ସ୍ୱାର୍ଥପରତା ତାଙ୍କ ଅନ୍ତରକୁ ସ୍ପର୍ଶ କରିନାହିଁ । ସିଂହାସନ ସେ ଲୋଡ଼ିନାହାନ୍ତି ଏବଂ ରାଜ ମୁକୁଟକୁ ସେ ବାରମ୍ବାର ପ୍ରତ୍ୟାଖ୍ୟାନ କରିଦେଇଛନ୍ତି । ନିଷ୍ଠୁର ଆତତାୟୀ ଧୂର୍ଜଟୀର କଣ୍ଠରୁ ସେଥିପାଇଁ ବାହାରି ପଡ଼ିଛି । "ସବୁ ଦୀପ ନିଭି ଗୋଟିଏ ଦୀପ ସେ ପାତ୍ର ବାହାଦୁର । ସେ ଦୀପଟି ମୁଁ ନିଭେଇ ଦେବି ? ନା ମଣିମା ପାରିବି ନାହିଁ ।" ଏହି ସଂଳାପଟିର ବ୍ୟଞ୍ଜନା ମାଧ୍ୟମରେ ମୁକୁନ୍ଦଦେବ ଏପରି ଉଜ୍ଜ୍ୱଳ ବର୍ଣ୍ଣରେ ଚିତ୍ରିତ ହୋଇଛନ୍ତି ଯେ ତାହା ଯେ କୌଣସି ଓଡ଼ିଆର ହୃଦୟକୁ ଗଭୀର ଭାବେ ସ୍ପର୍ଶ କରିପାରିବ ।

'ପୁରୁଷୋତ୍ତମ ଦେବ' ନାଟକରେ ପଣ୍ଡିତ ଗୋଦାବରୀଶ ଓଡ଼ିଆ ଜାତିର ଅସୀମ ବୀରତ୍ୱ, ସମର ନୈପୁଣ୍ୟ ଓ ଉଦାରତା ନାଟକର ପ୍ରତିଟି ଛତ୍ରରେ ଫୁଟାଇଛନ୍ତି । ଓଡ଼ିଆ ଯେ ବାହୁବଳରେ ସମଗ୍ର ଭୂଭାଗ ଜୟ କରିପାରେ ତାହା ପ୍ରମାଣିତ କରିଛନ୍ତି । ମା ଉତ୍କଳ ଭୂମିକୁ ନିଷ୍କଣ୍ଟକ କରିବା ପରେ ପୁରୁଷୋତ୍ତମ ଦେବ ନିଶ୍ଚିନ୍ତ ହୋଇ ରହିଯାଇ ନାହାନ୍ତି । ସେ ଦିଗ୍‌ବିଜୟ ଦ୍ୱାରା ଏହାର ପରିସୀମାକୁ ଆହୁରି ବୃଦ୍ଧି କରିବାଲାଗି ଆପ୍ରାଣ ଉଦ୍ୟମ କରିଯାଇଛନ୍ତି । ଏହି ନାଟକରେ କାଞ୍ଚି ରାଜାଙ୍କ ସହିତ ଉତ୍କଳ ଦୂତର ତୀବ୍ର ବାକ୍ୟ ବିନିମୟ କେବଳ ଓଡ଼ିଶାର ଦିଗ୍‌ବିଜୟ ଅଭିଳାଷର ସୂଚନା ଦିଏନାହିଁ, ତାର ପ୍ରଚଣ୍ଡ ଦାମ୍ଭିକତା ଓ ଦୁଃସାହସର ପରିଚୟ ମଧ୍ୟ ଦେଇଥାଏ ।

ମୋଟ ଉପରେ ନାଟ୍ୟକାର ଗୋଦାବରୀଶ ଏହି ନାଟକ ଦୁଇଟି ମାଧ୍ୟମରେ ଲୁପ୍ତ ଅତୀତ ଐତିହ୍ୟକୁ ସ୍ମରଣ କରାଇ ସୁପ୍ତ ଓଡ଼ିଆର ବୀରତ୍ୱପୂର୍ଣ୍ଣ ପ୍ରାଣସତ୍ତାକୁ ପୁନର୍ଜୀବିତ କରି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ଗଭୀର ଅନୁପ୍ରେରଣା ସୃଷ୍ଟି କରିବାକୁ ଚେଷ୍ଟା କରିଛନ୍ତି ।

୧୯୨୦ ସାଲରେ ଗୋପବନ୍ଧୁ ଉତ୍କଳ ସମ୍ମିଳନୀର ଲକ୍ଷ୍ୟ ଓ ଭୂମିକାକୁ ଜାତୀୟ ରାଜନୈତିକ ସ୍ରୋତରେ ମିଶାଇଦେଇ ଭାରତୀୟ ସ୍ୱାଧୀନତାକୁ ଅଗ୍ରାଧିକାର ଦେଲେ । କାରଣ ତାଙ୍କର ବିଶ୍ୱାସ ଥିଲା ଭାରତ ଯଦି ୧୯୨୧ ସାଲ ମଧ୍ୟରେ ଗାନ୍ଧୀଙ୍କ ନେତୃତ୍ୱରେ ସ୍ୱାଧୀନତା ପାଇଯାଏ ତେବେ ଭାଷା ଭିତ୍ତିରେ ଓଡ଼ିଶା ପ୍ରଦେଶ ଗଠନ ବିଳମ୍ବିତ ହେବନାହିଁ । ତାଙ୍କର ଏହି ବିଶ୍ୱାସ ଓ ପୂର୍ବରୁ ଥିବା ଧାରଣାକୁ ନେଇ ୧୯୨୦ ସାଲର ଓଡ଼ିଶାର ଜାତୀୟତାରେ ଦୁଇ ପ୍ରକାର ଚିନ୍ତାଧାରା ପ୍ରକାଶ ପାଇଥିଲା । ଏ ସମ୍ପର୍କରେ ଡଃ ଅତୁଳ ଚନ୍ଦ୍ର ପ୍ରଧାନ ''Struggly for freedom and Orissa'' ପୁସ୍ତକରେ ଲେଖିଛନ୍ତି ''There were two lines of political thinking in Orissa in 1920 on the one hand, Madhusudan and his followers belived in achieving the goal of the unification of Oriya speaking tracts by Cooperation with the British Government, on the otherhand, Gopabandhu Das and his young followers were receptive to the call of the National Congress under Gandhi's leadership''. ତେଣୁ ଏହି ପୃଷ୍ଠଭୂମିରେ ସାହିତ୍ୟରେ ମଧ୍ୟ ଜାତୀୟତା ଦୁଇଟି ଧାରାରେ ପ୍ରବାହିତ ହୋଇଥିଲା । ଗୋଟିଏ ହେଉଛି ସର୍ବଭାରତୀୟ ଜାତୀୟ ପ୍ରୀତି, ଅନ୍ୟଟି ଉତ୍କଳୀୟ ପ୍ରୀତି । ଏହି ସମୟର ବିଶିଷ୍ଟ ନାଟ୍ୟକାର ଅଶ୍ୱିନୀ କୁମାର ଘୋଷଙ୍କର ଐତିହାସିକ ନାଟକଗୁଡ଼ିକର ମଧ୍ୟ ଏ ଉଭୟ ଧାରା ପ୍ରବାହିତ ହୋଇଛି । କିନ୍ତୁ ଓଡ଼ିଶା ପ୍ରଦେଶ ଗଠନ ଦୁର୍ବାର ଭୂମିକାକୁ ସେ ଗ୍ରହଣ କରିନାହାନ୍ତି । ତାଙ୍କର ଦୁଇଟି ମାତ୍ର ନାଟକ 'ସୋରଠ' ଓ 'ତାଜମହଲ'ରେ ଭାରତ ଇତିହାସ ଉପଜୀବ୍ୟ ଭାବେ ଗୃହୀତ । ଅନ୍ୟ ସମସ୍ତ ନାଟକଗୁଡ଼ିକର ପଟ୍ଟଭୂମି ହେଉଛି ଓଡ଼ିଶା ।

ଓଡ଼ିଶା ତଥା ଓଡ଼ିଆର ମହତ୍ତ୍ୱ ଚମତ୍କାର ରୂପ ନେଇଛି ଅଶ୍ୱିନୀ କୁମାରଙ୍କ 'କଳାପାହାଡ଼' ନାଟକରେ । ଏ ନାଟକରେ ନାଟ୍ୟକାର ଆକବରଙ୍କ ମୁଖରେ ଓଡ଼ିଶାର ବୀରତ୍ୱ ଓ କଳାସଂସ୍କୃତିର ପରିଚୟ ଦେଇଛନ୍ତି । ଓଡ଼ିଆ ପାଇକ ନିଜର କର୍ତ୍ତବ୍ୟ ଭୁଲି ନିଦ୍ରାଭିଭୂତ ହୋଇଥିବାରୁ ସେ କରିଛି ଅକ୍ଷମଣୀୟ ଅପରାଧ । ସେଥିପାଇଁ ମୁକୁନ୍ଦଦେବଙ୍କ ସଂଳାପ ମାଧ୍ୟମରେ ନାଟ୍ୟକାର ଉତ୍କଳର ଅତୀତ ଗୌରବ ସମ୍ପର୍କରେ ସଚେତନ କରାଇଦେଇ କହିଛନ୍ତି "× × × × ଏହି କି ସେହି ଓଡ଼ିଆ, ଯାହାଙ୍କ ବଳରେ ଆଜିଯାଏ ଓଡ଼ିଶା ଖଣ୍ଡ ଆଜି ପର୍ଯ୍ୟନ୍ତ ଦୁର୍ଦ୍ଦାନ୍ତ ମୋଗଲ ପଠାଣର ମହାଲୋଭ ଗ୍ରାସରୁ ସୁରକ୍ଷିତ ? ଏହି କି ସେହି ଓଡ଼ିଆ, ଯାହାଙ୍କ ଧମନୀରେ ଗୌରବମଣ୍ଡିତ କେଶରୀଗଙ୍ଗ ବଂଶର ଉତ୍ତପ୍ତ ରକ୍ତ-ପ୍ରବାହ ଅଦ୍ୟାପି ଧାବିତ ? ତେବେ—ତେବେ ଆଜି ଏ କି ପରିବର୍ତ୍ତନ ! ନିଜର ବିବେକ ସମ୍ମୁଖରେ—ଅପର ଜାତି ସମ୍ମୁଖରେ ସମଗ୍ର ଜଗତ ସମ୍ମୁଖରେ, ଆଜି ନିଜର ଜାତୀୟ ଗୌରବର ଏକ ପରିହାସ ! ଜାଗରଣ ସମୟରେ ନିଦ୍ରା—କର୍ତ୍ତବ୍ୟ ସମୟରେ ଆଳସ୍ୟ-ଝାସ ସମୟରେ ଅବସାଦ ! × × ଓଡ଼ିଶାର ଗୌରବ ନୀଳାଚଳର ଅତଳ ସମୁଦ୍ର ଗର୍ଭରେ ନିମଜ୍ଜିତ—ଓଡ଼ିଶାର ସ୍ୱାଧୀନତା ଦଶାଶ୍ୱମେଧ ଘାଟର ପ୍ରସ୍ତରଖଣ୍ଡ ପରି ଚୂର୍ଣ୍ଣୀକୃତ ।" ମନେହୁଏ ବେଦନା ଜର୍ଜରିତ ଏହି ଉଦ୍‌ବୋଧନ ବାଣୀ ମୁକୁନ୍ଦଦେବଙ୍କର ଦ୍ୱାର ରକ୍ଷୀ ପ୍ରତି ନୁହେଁ, ଅଶ୍ୱିନୀ କୁମାରଙ୍କ ସ୍ତ୍ରୀ ଓଡ଼ିଆ ଜାତି ପ୍ରତି ଅଭିପ୍ରେତ ।

ଇତିହାସରେ ଭୋଇବଂଶର ପ୍ରତିଷ୍ଠାତା ରାଜା ପ୍ରତାପରୁଦ୍ରଙ୍କର ମନ୍ତ୍ରୀ ଗୋବିନ୍ଦ ବିଦ୍ୟାଧର ଏକ ବିଶ୍ୱାସଘାତକ ଚରିତ୍ର ହୋଇଥିଲେ ମଧ୍ୟ ଅଶ୍ୱିନୀ କୁମାର 'ଗୋବିନ୍ଦ ବିଦ୍ୟାଧର' ନାଟକରେ ସେହି ଚରିତ୍ରକୁ ଏକ ନିସ୍ୱାର୍ଥପର, ପ୍ରଭୁଭକ୍ତ ଚରିତ୍ରରେ ଚିତ୍ରଣ କରିଛନ୍ତି । ଅତୀତ ଇତିହାସର ବିଶିଷ୍ଟ ଚରିତ୍ରର ଆଦର୍ଶ ଉପସ୍ଥାପନ କରି ଜନ ମାନସରେ ନିଜ ମାତୃଭୂମି ପ୍ରତି ଆସକ୍ତି ସୃଷ୍ଟି କରିବାର ଭାବପ୍ରବଣତା ଯୋଗୁଁ ହିଁ ନାଟ୍ୟକାର ଏପରି କରିଛନ୍ତି ।

ତାଙ୍କର 'କୋଣାର୍କ' ନାଟକରେ ପ୍ରାଚୀନ ଉତ୍କଳର କଳା ଓ ସଂସ୍କୃତି ବିଷୟ ବର୍ଣ୍ଣିତ ହୋଇଥିବାରୁ ଜାତୀୟତାର ଗମ୍ଭୀର ସ୍ୱର ଝଙ୍କୃତ ହୋଇଛି । 'ପାଇକ ପୁଅ' ନାଟକରେ ଉଦାର ଜାତୀୟତାର କଳ୍ପନା, ପାଇକ ବୀରତ୍ୱର ଦୀର୍ଘ ବର୍ଣ୍ଣନା ରହିଛି ଯାହା ଓଡ଼ିଆ ପ୍ରାଣରେ ଉନ୍ମାଦନା ସୃଷ୍ଟି କରିବାକୁ ସମର୍ଥ ହୋଇଛି ।

କବିବର ରାଧାନାଥ ଯେପରି ଓଡ଼ିଶାର ବିଭିନ୍ନ ଅଞ୍ଚଳର ଇତିହାସ ଓ ଭୂଗୋଳର ଛିନ୍ନଚିତ୍ର ପ୍ରଦାନ କରିଛନ୍ତି ; ଅଶ୍ୱିନୀ କୁମାର ସେହିପରି ବିଭିନ୍ନ ଆଞ୍ଚଳୀକ ଇତିହାସକୁ ନେଇ ନାଟକ ରଚନା କରିଛନ୍ତି । ଏ ଧରଣର ନାଟକରେ ମଧ୍ୟ ଓଡ଼ିଶାର ବିପୁଳ ଗୌରବର ବିସ୍ତୃତ ବର୍ଣ୍ଣନା ରହିଛି । ସମ୍ବଲପୁରର ରାଜା ଅଜୟସିଂହଙ୍କ ସହ ଯୁଦ୍ଧରେ ନାଗପୁର ଭୋନ୍‌ସଲା ଓ ରଘୁଜୀଙ୍କ ପରାଜୟ । 'ସମଲେଶ୍ୱରୀ' ନାଟକର ମୁଖ୍ୟ ଉପଜୀବ୍ୟ ବିଷୟ । ସେହିପରି 'ଭଞ୍ଜ ଭୁଯଙ୍ଗ' ନାଟକର କଥାବସ୍ତୁ ମଧ୍ୟ ନୀଳଗିରି ବଂଶଲିପିରୁ ସଂଗୃହୀତ ।

ସବୁଜ ଯୁଗର ବିଶିଷ୍ଟ ସାହିତ୍ୟିକ ମାୟାଧର ମାନସିଂଙ୍କ 'କାରବାଟୀ' ନାଟକ ଏକ ଜାତୀୟବାଦୀ ସାହିତ୍ୟ ସୃଷ୍ଟି । ନାଟକଟିର କଥାବସ୍ତୁ ଓ ସଂଳାପ ସଂଯୋଜନାରେ ନିବିଡ଼ ଉତ୍କଳୀୟ ପ୍ରୀତିର ସ୍ପଷ୍ଟ ମୁଦ୍ରାଙ୍କ ରହିଛି । ଏହି ନାଟକର ଶେଷ ଦୃଶ୍ୟରେ ଅନଙ୍ଗଭୀମ ଦେବଙ୍କ ଭାଷଣରୁ ହିଁ ମାନସିଂହଙ୍କ ଉଗ୍ର ଜାତୀୟତାବାଦର ସ୍ୱରୂପ ପ୍ରକଟିତ ହୁଏ । ଓଡ଼ିଶାର ଦିଗ୍‌ବିଜୟର କାହାଣୀ ପୁରୀ ଓ କୋଣାର୍କ ମନ୍ଦିର ନିର୍ମାଣର ବିବରଣୀରେ ନାଟକଟି ପରିପୂର୍ଣ୍ଣ । ନାଟକର ଅଧିକାଂଶ ପୃଷ୍ଠାରେ ଓଡ଼ିଆର ଗୌରବମୟ ବୀରତ୍ୱର ମହିମା କୀର୍ତ୍ତିତ । ସବୁଜ ଯୁଗର ଅନ୍ୟତମ ସାହିତ୍ୟିକ ରାମାରଞ୍ଜନ ମହାନ୍ତିଙ୍କର 'ଗୌଡ଼ ବିଜେତା' ଏକ ଜାତୀୟ ଗୌରବାବହ ନାଟକ । ନାଟ୍ୟକାର ଓଡ଼ିଶାର ଗୌରବ ପ୍ରଖ୍ୟାପନ କରିବାଲାଗି ନାଟକର ବହୁ ସ୍ଥାନରେ ଉଦ୍ୟମ କରିଛନ୍ତି । ନାଟକର ମୁଖ୍ୟ ଉତ୍କଳୀୟ ଚରିତ୍ରଗୁଡ଼ିକ ମୁଖରେ ଓଡ଼ିଶାର ମହାନ୍ ଐତିହ୍ୟ ଓ ଚରିତ୍ରବତ୍ତା ସମ୍ପର୍କୀୟ ସଂଳାପମାନ ପ୍ରଦାନ କରାଯାଇଛି । ଏ ସମୟର ଅନ୍ୟତମ ନାଟ୍ୟକାର ହରିଶ୍ଚନ୍ଦ୍ର ବଡ଼ାଲଙ୍କର 'ଦେଶର ଡାକ' ନାଟକ ଭାଷାସୂତ୍ରରେ ପ୍ରଦେଶ ଗଠନ ଉପରେ ଆଧାରିତ । ୧୯୩୬ ମସିହାରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ରୂପେ ଗଠିତ ହେବା ପୂର୍ବରୁ ଓଡ଼ିଆମାନଙ୍କର ଦାବୀ ସଂସ୍ଥାପନ ନିମନ୍ତେ ଏହି ନାଟକଟିର ପରିକଳ୍ପନା । ଜାତୀୟତା ଉଦ୍ଦୀପକ ଏହି ନାଟକରେ ଓଡ଼ିଆମାନଙ୍କର କଳାପ୍ରାଣତା ଏବଂ ଦେଶପ୍ରେମ ବୋଧ 'ଦୀନବନ୍ଧୁ' ଚରିତ୍ର ସାହାଯ୍ୟରେ ବର୍ଣ୍ଣିତ ହୋଇଛି ।

କାଳୀଚରଣଙ୍କ ସମସାମୟିକ ନାଟ୍ୟକାର ସୀମାଦ୍ରି ପଟ୍ଟନାୟକଙ୍କ 'ବୀରଶ୍ରୀ' ଅନଙ୍ଗଭୀମ ଦେବ' ଏକ ଉତ୍କଳୀୟ ଜାତୀୟତାଦ୍ୟୋତକ ନାଟକ । ୧୯୬୭ ସାଲରେ ନାଟକଟି ପ୍ରକାଶିତ ହୋଇଥିଲେ ମଧ୍ୟ ଏହାର ପରିକଳ୍ପନା ଓ ଅଭିନୟ ୧୯୭୯ ସାଲରେ ହୋଇଥିଲା । ଜୟଦେବଙ୍କୁ ଉତ୍କଳୀୟଭାବରେ ପ୍ରତିଷ୍ଠା ଦେବାନିମନ୍ତେ ନାଟ୍ୟକାରଙ୍କର ବ୍ୟାକୁଳତା ନାଟକରେ ପ୍ରକାଶିତ । ନାଟକଟିର ବହୁ ସ୍ଥାନରେ ଓଡ଼ିଶାର ଗୌରବମୟ ସାମରିକ, ସାଂସ୍କୃତିକ ଓ ଧର୍ମନୈତିକ ଚିତ୍ର ପ୍ରଦାନ କରାଯାଇଛି । ଅନଙ୍ଗଭୀମ ଦେବଙ୍କର ଶ୍ରୀ ଜଗନ୍ନାଥଙ୍କ ପ୍ରତି ଅଚଳାଭକ୍ତି, ଜୟଦେବଙ୍କର ଅପୂର୍ବ କବିତ୍ୱ ଶକ୍ତି ଏବଂ ବିଷ୍ଣୁ ସାମନ୍ତରାୟଙ୍କର ଅସାଧାରଣ ବୀରତ୍ୱ ଉତ୍କଳୀୟ ଜାତୀୟତାବାଦର ସ୍ୱରୂପ ପ୍ରକଟନ କରିଅଛି ।

ଧନେଶ୍ୱର ଦାସଙ୍କ 'ଖାରବେଳ' ନାଟକଟି ଓଡ଼ିଆ ଜାତିର ଗୌରବମୟ ଐତିହ୍ୟ ବର୍ଣ୍ଣନାରେ ଜାତୀୟ ଜାଗରଣ ସୃଷ୍ଟି ନିମନ୍ତେ ପରିକଳ୍ପିତ । ଏ ନାଟକଟିରେ ନାଟ୍ୟକାର ଉତ୍କଳୀୟ ବୀରତ୍ୱର ଓ କଳା ସଂସ୍କୃତିର ପ୍ରଶଂସା ଉଚ୍ଛ୍ୱସିତ ଓ ସ୍ୱତଃ ସ୍ଫୂର୍ତ୍ତ ଭାଷାରେ କରିଯାଇଛନ୍ତି । ନାଟ୍ୟକାର କଳିଙ୍ଗ ଓ ତା'ର ମନୋହର ପ୍ରକୃତି, ଶିଳ୍ପନୈପୁଣ୍ୟ ତଥା ଅସାଧାରଣ ବୀରତ୍ୱର ବର୍ଣ୍ଣନା ଦେଲାବେଳେ ଭାବପ୍ରବଣ ହୋଇ ଉଠିଛନ୍ତି ।

ଏହିପରି ନାଟ୍ୟକାରମାନେ ସେମାନଙ୍କର ନାଟକରେ ଉତ୍କଳର ଅତୀତ ଐତିହ୍ୟର ଗୌରବମୟ ଚିତ୍ର ପ୍ରଦାନକରି, ସମାଜ ଜୀବନରେ ସଂସ୍କାର ଆଣିବାକୁ ଚେଷ୍ଟାକରି, ଓଡ଼ିଶାର ସାମରିକ ଗୌରବକୁ ଗୁରୁତ୍ୱ ପ୍ରଦାନ କରି, ବୀର ଓଡ଼ିଆମାନଙ୍କର ବୀରତ୍ୱପୂର୍ଣ୍ଣ ଜୀବନଗାଥାକୁ ଚିତ୍ରଣକରି ଓଡ଼ିଶାର ଜନମାନସରେ ସେମାନଙ୍କର ଲୁପ୍ତ ଗୌରବ ସମ୍ପର୍କରେ ସଚେତନତା ଆଣିବାପାଇଁ ଚେଷ୍ଟା କରିଛନ୍ତି । ଯାହା ଫଳରେ କି ସୁପ୍ତ ଓଡ଼ିଆ ଜାତି ପୁଣି ଚେଇଁଉଠିଛି । ନିଜର ଜନ୍ମଭୂମି ଓଡ଼ିଶା । ଓଡ଼ିଆ ଜାତିର ଦୁର୍ଦ୍ଦଶା ସମ୍ପର୍କରେ ସଚେତନ ହୋଇଉଠିଛି, ନିଜକୁ ଏକ ଗୌରବାବହ ଜାତି ଭାବରେ ସର୍ବ ସମକ୍ଷରେ ପ୍ରତିଷ୍ଠିତ କରି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ଆଶା ଓ ସଂଗ୍ରାମ କରିଛି ; ନିଜ ପ୍ରଚେଷ୍ଟାରେ ମଧ୍ୟ ସଫଳ ହୋଇଛି । ତେଣୁ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନରେ ଓଡ଼ିଆ ନାଟକର ଭୂମିକା ନିଶ୍ଚିତ ଭାବରେ ଗୁରୁତ୍ୱପୂର୍ଣ୍ଣ ।

ମାର୍ଫତ୍‌-ଶ୍ରୀ ଚୈତନ୍ୟ ପରିଡ଼ା,
କ୍ୱାଟର୍ସ ନମ୍ବର ଏଫ୍‌-୫୦,
ବାଣୀବିହାର, ଭୁବନେଶ୍ୱର-୭୫୧୦୦୪ ।



# ଭୁବନେଶ୍ୱର

ଅବନୀ ପ୍ରଧାନ

ଭୁବନେଶ୍ୱର !
ତୋ'ର ଅନେକ ନାମ ଯେ
ତନ୍ମଧ୍ୟରୁ ତୁ ଶ୍ରୀଭୁବନେଶ୍ୱର
ଆସ ଗଛ
ଶିବ ଲିଙ୍ଗ
ଥାପିଥିବା ଗୌଡ଼େଶ୍ୱର ଶଶାଙ୍କ
ଏକାମ୍ରବନ
ଏକାମ୍ର-ନଗର
ଖଣ୍ଡାଚଳ, କୁଞ୍ଜକେଶ୍ୱର, ଧଉଳି ପାହାଡ଼
ସର୍ବୋପରି ବହି ଗଙ୍ଗେଶ୍ୱର
ତାହା ତୁ ଭୁବନେଶ୍ୱର ।

ରାଜ ରାଜ ଲିଙ୍ଗରାଜ
କୋଟି ଲିଙ୍ଗେଶ୍ୱରରେ ଭର୍ତ୍ତି ବିନ୍ଦୁ ସରୋବର
ପ୍ରିୟ ଭୁବନେଶ୍ୱର
ପରମ୍ପରାରୁ ଯାତ
ଅଯୋନି ସମ୍ଭୂତ
ହି ଭୁବନେଶ୍ୱର ॥

ଦୁର୍ମିଳା ନନ୍ଦନମାନେ ନାମ ଦେଲେ କୃତ୍ତିବାସ
ତୁ'ତ କେହି ନୁହଁ ଅନନ୍ତ ବାସୁଦେବ
ଅଶୋକେଶ୍ୱର
ରାମେଶ୍ୱର, ଲକ୍ଷ୍ମଣେଶ୍ୱର, ଭରତେଶ୍ୱର ଓ ଶତ୍ରୁଘ୍ନେଶ୍ୱର
ତେଲା ବ୍ରହ୍ମେଶ୍ୱର
ଶିବ-ପାର୍ବତୀଙ୍କ ରାସକ୍ରୀଡ଼ା ସ୍ଥଳ
ଗନ୍ଧବତୀପୁର
ମୋ' ପ୍ରେମ ଆଉ ଆମୋଦ ସହର
ଭୁବନେଶ୍ୱର
ଶ୍ରୀଭୁବନେଶ୍ୱର ।।।

ମୁଖ୍ୟ ଅଧ୍ୟାପକ, ଇତିହାସ ବିଭାଗ,
ଧାମନଗର କଲେଜ,
ଭଦ୍ରକ-୭୫୬୧୧୭ ।

# ବାସନ୍ତିକ ଦୋଳ ମହୋତ୍ସବ

ପ୍ରଫୁଲ୍ଲ ପଟ୍ଟନାୟକ

ବାସନ୍ତିକ-ଦୋଳ ମହୋତ୍ସବ ଏକ ମହାନ ଭାରତୀୟ ପର୍ବ । ଏହି ପର୍ବର ଅନ୍ୟ ନାମ ବସନ୍ତୋତ୍ସବ । ଏହି ପର୍ବ ସମ୍ବନ୍ଧରେ ବହୁ ପୌରାଣିକ ଆଖ୍ୟାୟିକାର ଅବତାରଣା ପୁରାଣମାନଙ୍କରେ କରାଯାଇଛି । ପୁରାଣର ବର୍ଣ୍ଣନା ଅନୁଯାୟୀ ବର୍ଣ୍ଣିତ ଅଛି ଯେ ପୂର୍ବକାଳରେ 'ହୋଲିକା' ନାମକ ଏକ ରାକ୍ଷସୀ ବିଦ୍ୟମାନ ଥିଲା । ଉତ୍କଳୀୟ କାବ୍ୟ, ପୁରାଣରେ ତାହାର ମୁଖ ମେଷାକୃତି ଥିବା ଦୋଳ ପର୍ବର ବିବରଣୀମାନଙ୍କରୁ ମିଳିଥାଏ । କେହି କେହି ପୁରାଣକାର ଏହି ରାକ୍ଷସୀ ହୋଲିକା ହିରଣ୍ୟକଶିପୁର ଭଗିନୀ ଓ ଅତ୍ୟନ୍ତ ପରାକ୍ରମୀ ବୋଲି ବର୍ଣ୍ଣନା କରିଛନ୍ତି । ଋତୁରାଜ ବସନ୍ତର ଆଗମନରେ ଯେତେବେଳେ ଦେବତାମାନେ ଆନନ୍ଦ ଉତ୍ସବ କରିବାକୁ ଆରମ୍ଭ କରନ୍ତି ସେତେବେଳେ ହୋଲିକା ଯାହାକୁ ଓଡ଼ିଶାରେ ମେଣ୍ଢା ବୋଲି କହନ୍ତି, ସେ ଦେବତାମାନଙ୍କର ଏହି ଆନନ୍ଦ ଉତ୍ସବ ପରିପୂର୍ଣ୍ଣ ବାସନ୍ତିକ ପର୍ବକୁ ନାନା ଉପାୟରେ ପଣ୍ଡକରିବା ନିମନ୍ତେ ଆୟୋଜନ କରେ ଓ ପ୍ରତିହତ କରିଥାଏ । ହୋଲିକାର ଉପଦ୍ରବରେ ଦେବତାମାନଙ୍କର ବସନ୍ତୋତ୍ସବ ପ୍ରତିପାଳିତ ହୋଇପାରିଲା ନାହିଁ । ଦେବତାମାନେ ମର୍ତ୍ତ୍ୟମଣ୍ଡଳରେ ଉକ୍ତ ବସନ୍ତୋତ୍ସବ ପାଳନ ନିମନ୍ତେ ଗୋପାଙ୍ଗନା ଶିରୋମଣିଙ୍କ ସହ ଶ୍ରୀ କୃଷ୍ଣଚନ୍ଦ୍ରଙ୍କର ମିଳନାତ୍ମକ ଉପସ୍ଥିତି କାମନା କରି ଶ୍ରୀରାଧା-କୃଷ୍ଣଙ୍କର ମିଳନକୁ କେନ୍ଦ୍ର କରି ବ୍ରଜ ଓ ଅନ୍ୟାନ୍ୟ ଦିବ୍ୟଧାମମାନଙ୍କରେ ଉତ୍ସବ ପ୍ରତିପାଳନର ବ୍ୟବସ୍ଥା କରାଇବା ସମୟରେ "ହୋଲିକା" ଆବିର୍ଭାବ ହୋଇ ନାନାପ୍ରକାର ଯନ୍ତ୍ରଣା, ରୋଗ ବିସ୍ଫୋଟକ ଦ୍ୱାରା ମାନବ, ଋଷି ମୁନି ତଥା ଦେବବୃନ୍ଦଙ୍କୁ ନିରାନନ୍ଦ ଆଣି ଦେଲା-ଫଳରେ ଦେବତାମାନେ ମର୍ତ୍ତ୍ୟଲୋକରେ ଆନନ୍ଦ ଅନୁଭବ କରି ପାରିଲେ ନାହିଁ । ଏହା ବ୍ରଜେନ୍ଦ୍ରନନ୍ଦନ କୃଷ୍ଣଚନ୍ଦ୍ର ଜାଣିପାରି ଦେବତା ତଥା ଭକ୍ତଜନମାନଙ୍କର ବସନ୍ତୋତ୍ସବକୁ ସମ୍ପନ୍ନ କରାଇବା ପାଇଁ ଅଭୟ ପ୍ରଦାନ କଲେ । ପଞ୍ଚପାଣ୍ଡବ ତଥା ଅନ୍ୟ ଦେବ ଋଷିମାନଙ୍କୁ ନେଇ ଭଗବାନ ଗୋବିନ୍ଦ ଫାଲ୍‌ଗୁନ ମାସ ଶୁକ୍ଳପକ୍ଷ ଦଶମୀ ଦିନ ଚାଞ୍ଚରିକା ଯାତ୍ରା କଲେ । ଚାଞ୍ଚରିକା ମହୋତ୍ସବର ଅର୍ଥ "ହୋଲିକା" ମାୟାଦ୍ୱାରା ସୃଷ୍ଟି କରୁଥିବା ରୋଗମୟ କ୍ଳେଶକୁ ପ୍ରତିହତ କରିବା ନିମନ୍ତେ ନାନା ଔଷଧ ଦ୍ୱାରା ଫଲ୍‌ଗୁ ବା ଅବିର ନାମକ ଏକ ରୋଗ ନାଶକ ଦ୍ରବ୍ୟ ସୃଷ୍ଟି କରି ତାହାକୁ ଉଡ଼ାଇ ସେ ରୋଗମୟ ବାତାବରଣକୁ ପ୍ରଶମିତ କରି ହୋଲିକା ବାସ କରୁଥିବା ସ୍ଥାନ ପର୍ଯ୍ୟନ୍ତ ବିଜେ କରିଥିଲେ । ଶିବ ଓ ବିଷ୍ଣୁ ଉଭୟ ହୋଲିକାର ମାୟା ଓ ତାହାକୁ ବଧ କରି ଜଗତକୁ ନିର୍ମଳ ବସନ୍ତୋତ୍ସବର ଆନନ୍ଦ ଦେବା ନିମନ୍ତେ ନିଜ ନିଜ ଶରୀରରୁ ମହାତେଜ ହୁତାଶନ ସୃଷ୍ଟି କରି ମେଷାକୃତି ହୋଲିକାକୁ ଦହନ କରିଥିଲେ ଏହି ଉତ୍ସବ ଫାଲ୍‌ଗୁନ ଶୁକ୍ଳ ଚତୁର୍ଦ୍ଦଶୀ ରାତିରେ ଅନୁଷ୍ଠିତ ହେଲା-ଉତ୍ତର ଭାରତରେ ଏହି ଦୋଳଯାତ୍ରାର ବିଶିଷ୍ଟ ଅଙ୍ଗ ହେଲା ହୋଲିକା 'ଦହନ' । ମାତ୍ର ଦେବ ଦୋଳ ବିଶେଷ ଭାବେ ଶ୍ରୀ ଜଗନ୍ନାଥଙ୍କୁ କେନ୍ଦ୍ରକରି ଓଡ଼ିଶାରେ ସବୁଠାରୁ ବଳି ପ୍ରସିଦ୍ଧ ଓ ଅଗିଘରା ପୋଡ଼ି ହିଁ ମେଷଗୃହ ଦାହନର ଦୃଶ୍ୟ ବା କୃତ୍ୟ ବୋଲି ବିବେଚିତ ହୋଇଥାଏ । ଏହି ଦିନ ଶିବ-ପଞ୍ଚପାଣ୍ଡବ ଓ ଗୋବିନ୍ଦ ସ୍ୱୟଂ ଉପସ୍ଥିତ ରହନ୍ତି,'ପୁରୋହିତ ଦର୍ପଣ' ଗ୍ରନ୍ଥରେ ଉଲ୍ଲେଖ ରହିଛି-

ଓଁ ବିଷ୍ଣୁ ରୁଦ୍ର ସମୁଦ୍‌ଭୂତ ମହାଶନ ହୁତାଶନ  
ମେଷ ମନ୍ଦିର ଦାହୋଦ୍ ସମୁଦ୍‌ଭୂତ ଶିଖୋଦ୍‌ଭବ ।  
ପ୍ରଦକ୍ଷିଣେନ ଧାବନ୍ତଂ କୌତୁକାଦ୍ ସହ ବିଷ୍ଣୁନା  
ପ୍ରଦକ୍ଷିଣଂ ଦକ୍ଷିଣାସ୍ତେ କୁରୁକୃଷ୍ଣ ବିଶେଷତଃ ।

ଦୋଳ ପୂର୍ଣ୍ଣିମା ପବିତ୍ର ଅବସରରେ ଶ୍ରୀମନ୍ଦିରରୁ ଶ୍ରୀ ଦୋଳ ଗୋବିନ୍ଦଙ୍କୁ ଆଣି ଦକ୍ଷିଣାଭିମୁଖ ଦୋଳରେ ବିଜେ କରାଯାଏ-ଅଗଣିତ ଭକ୍ତ ଶ୍ରୀ ଦୋଳ ଗୋବିନ୍ଦ କୃଷ୍ଣଚନ୍ଦ୍ରଙ୍କୁ ପ୍ରାର୍ଥନା ଜଣାଇ ଭକ୍ତ କହିଥାଏ-

ଜୟକୃଷ୍ଣ ଜଗନ୍ନାଥ ଜୟ ଆନନ୍ଦ ବିଗ୍ରହ  
ଗଦାପଦ୍ମଧର ଶାନ୍ତ ନାନାଳଙ୍କାର ଭୂଷିତ ।  
ନିମ୍ନକର ର୍ଦ୍ଧ୍ୱୋ ୟୁକ୍ତୋ ଶଂଖ, ଚକ୍ର ଯଥୋଚିତ  
ବନ୍ଦେ ତ୍ୱାଂ ଦୋଳଗୋବିନ୍ଦ ଋତୁରାଜ ପ୍ରିୟ ପ୍ରଭୋ ।

ଅତୀତରେ ଶ୍ରୀମନ୍ଦିରରୁ ସ୍ୱୟଂ ଦାରୁବ୍ରହ୍ମରୂପୀ ଜଗନ୍ନାଥ ଦୋଳକୁଣ୍ଡକୁ ବିଜୟ କରୁଥିଲେ-ପୁରୀର ଦୋଳମଣ୍ଡପ ସାହିକୁ- । ମାତ୍ର କଥିତ ଅଛି ଯେ ଦୋଳ ମହୋତ୍ସବ ଲୀଳାରେ ପ୍ରଭୁଙ୍କର ଶ୍ରୀଅଙ୍ଗ ଭାଗ ବଶତଃ ଭଗ୍ନ ହେବାରୁ ସଂପ୍ରତି ଏହା-ମନ୍ଦିର ଉତ୍ତର ଭାଗ ଦୋଳବେଦୀକୁ ଶ୍ରୀଜୀଉଙ୍କର ଚଳନ୍ତି ବିଗ୍ରହ ଦୋଳଗୋବିନ୍ଦ ପଞ୍ଚପାଣ୍ଡବ ସହ ଦୋଳପୂର୍ଣ୍ଣିମାର ପବିତ୍ର ତିଥିରେ ବିଜୟ କରୁଛନ୍ତି-ଏଣୁ ଦୋଳବେଦୀରେ ଅଧିଷ୍ଠିତ ଭଗବାନ ଦୋଳଗୋବିନ୍ଦ, ଶ୍ରୀଦେବୀ ଓ ଭୂଦେବୀଙ୍କୁ ଚୂତଫଳ ସମର୍ପଣ କରିବାର ବିଧି ଓ ପରମ୍ପରା-ଦୋଳ ଉତ୍ସବର ଅନ୍ୟ ଏକ ପ୍ରଧାନ ଅଙ୍ଗ-ଏହି ଚୂତଫଳ ସମର୍ପଣ ସମୟରେ-ଦୋଳଗୋବିନ୍ଦଙ୍କୁ ଲକ୍ଷ୍ୟ କରି କୁହାଯାଇଛି-

ବସନ୍ତଋତୁ ସଂଜାତ ମିଷ୍ଟ ଗନ୍ଧ ସୁଖାବହ  
ଗୃହାଣ ଗୋପୀ ଗୋବିନ୍ଦ ରସାଳ ଫଳମୁତ୍ତମମ୍ ।

ଏହାପରେ ଅଷ୍ଟଗନ୍ଧ ଯୁକ୍ତ ଫଲ୍‌ଗୁ ସମର୍ପଣ ପୂର୍ବକ ଦୋଳଗୋବିନ୍ଦଙ୍କୁ ଭକ୍ତ ପ୍ରାର୍ଥନା ଜଣାଏ-

ତ୍ୱଂ ଫଲ୍‌ଗୁ ସର୍ବ ଦେବାନାଂ ଶିରୋଧାର୍ଯ୍ୟୋଽସି ସଦା  
ହରପ୍ରୀତି ଭୂୟାଶାର୍ଯ୍ୟା ନମସ୍ତେରୁଣ ତେଜସେ

ନାରାୟଣ ପରଂବ୍ରହ୍ମ ବୈକୁଣ୍ଠ ପୁରୁଷୋତ୍ତମ୍
ଲୀଳୟା ଖେଳୟା ନାଥ ଗୋପିଭିଃ ପରିବାରିତ ।

ଏତଦ୍ ବ୍ୟତୀତ ଦୋଳ ଏକ ସାର୍ବଜନୀନ, ଶାନ୍ତି, ମୈତ୍ରୀର ପର୍ବ–ଏହା ଉତ୍କଳର ପୁରପଲ୍ଲୀରେ–ବଡ଼ ଆଡ଼ମ୍ବର ସହକାରେ ପ୍ରତିପାଳିତ ହୋଇଥାଏ–ଜାତି ଧର୍ମ ନିର୍ବିଶେଷରେ ପ୍ରତ୍ୟେକ ପରସ୍ପରକୁ ଅବିର ଓ ରଙ୍ଗ ପ୍ରଦାନ କରିଥା'ନ୍ତି–ଏହା ଆମ ସୁସ୍ଥ ସାମାଜିକ ସଂହତିର ଏକାନ୍ତ ପ୍ରତୀକ କହିଲେ ଭୁଲହେବ ନାହିଁ ।

ଦୋଳ ପୂର୍ଣ୍ଣିମାର ପବିତ୍ରତା ଓ ସାମାଜିକ ବିସ୍ତରରେ– ଏ ପର୍... ବୈଶିଷ୍ଟ୍ୟ–ବହୁଦୃଷ୍ଟି କୋଣରୁ କାଳ କାଳ ଧରି–ପର୍ଯ୍ୟବେ... କ୍ଷରରେ ଏହି ପର୍ବର–ଗୁରୁତ୍ୱ–ବାସ୍ତବିକ ଅନସ୍ୱୀକାର୍ଯ୍ୟ–ଆ... ସମଗ୍ର ଦେଶରେ ସଂକୀର୍ଣ୍ଣ ସଂପ୍ରଦାୟିକତା–ଧର୍ମାନ୍ଧତା ସମୟ... ଦୋଳ ଉତ୍ସବର ଭୂମିକା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ।

---

ଭାରତୀ ମଠ ଲେନ୍, ପୁରୀ ।



ପୁରୀଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଜଳ ବିଶୋଧନ ପ୍ରକ୍ରିୟା ପ୍ରକଳ୍ପ ବୁଲି ଦେଖୁଛନ୍ତି ।

# ଓଡ଼ିଶାରେ ମତ୍ସ୍ୟ ଚାଷ

ଓଡ଼ିଶାରେ ମତ୍ସ୍ୟଚାଷ ଲାଗି ବିପୁଳ ସମ୍ପଦ ରହିଛି । ସୁଦୀର୍ଘ ୪୮୦ କି. ମି. ଉପକୂଳବର୍ତ୍ତୀ ଅଞ୍ଚଳ ୬,୭୦,୩୬୯ ହେକ୍ଟର ମଧୁର ଜଳ ୪,୩୨,୧୩୮ ହେକ୍ଟର ଲୁଣି ଜଳ ରହିଛି । ବିଗତ ୧୯୯୦-୯୧, ୧୯୯୧-୯୨, ୧୯୯୨-୯୩ ଓ ୧୯୯୩-୯୪ ବର୍ଷମାନଙ୍କରେ ବାର୍ଷିକ ଯୋଜନା ଖର୍ଚ୍ଚ ମତ୍ସ୍ୟଚାଷ ଉଦ୍ୟୋଗରେ ଯଥାକ୍ରମେ ୮୯୬·୧୫ ଲକ୍ଷ, ୮୩୫·୬୫ ଲକ୍ଷ, ୯୩୦·୦୯ ଲକ୍ଷ ଓ ୧୦୩୩·୮୬ ଲକ୍ଷ ଟଙ୍କା ବିନିଯୋଗ କରାଯାଇଥିଲା ।

ଆଧୁନିକ ଧରଣର ମତ୍ସ୍ୟଚାଷ କୌଶଳ ପ୍ରୟୋଗ କରି ୧୯୯୨-୯୩ ବର୍ଷ ସୁଦ୍ଧା ୯୩,୭୬୨ ମେଟ୍ରିକ ଟନ୍ ମତ୍ସ୍ୟ ଉତ୍ପାଦନ ଓ ୧୯୯୩-୯୪ ସୁଦ୍ଧା ୧୧୦ ହଜାର ମେଟ୍ରିକ୍ ଟନ୍ ମତ୍ସ୍ୟ ଉତ୍ପାଦନ ହେବାର ଲକ୍ଷ୍ୟଧାର୍ଯ୍ୟ କରାଯାଇଥିଲା ।

୧୯୯୨-୯୩ ବର୍ଷରେ ୭୮୫·୮୫ ନିୟୁତ ଗୁଣ୍ଡି ଯାଆଁଳ ଉତ୍ପାଦନ କରାଯାଇଛି ଓ ପ୍ରାୟ ୧୯୯୨-୯୩ ବର୍ଷ ସୁଦ୍ଧା ୯୮·୯୬ ନିୟୁତ ଉତ୍ପାଦନ ହୋଇଛି ।

୧୯୯୩-୯୪ ବର୍ଷରେ ୭୬୯·୩ ନିୟୁତ ଗୁଣ୍ଡି ଯାଆଁଳ ଏବଂ ୯୩·୮ ନିୟୁତ ପ୍ରାୟ ଉତ୍ପାଦନ ହୋଇଛି ।

ମତ୍ସ୍ୟଚାଷ ଉନ୍ନୟନ ସଂସ୍ଥା ଜରିଆରେ ୧୯୯୨-୯୩ ବର୍ଷରେ ୩୫,୯୯୫ ହେକ୍ଟର ମଧୁର ଜଳ ଜଳାଶୟର ଉନ୍ନତି ସାଧନ କରାଯାଇଛି ଏବଂ ୩୨,୬୯୩ ଜଣ ଚାଷୀଙ୍କୁ ମତ୍ସ୍ୟଚାଷ ତାଲିମ୍ ଦିଆଯାଇଛି । ଡିସେମ୍ବର ୯୩ ସୁଦ୍ଧା ୧,୫୧୫ ହେକ୍ଟର ଜଳାଞ୍ଚଳ ବିକାଶ ସାଧନ କରାଯାଇ ୧,୨୫୯ ଜଣ ଚାଷୀଙ୍କୁ ତାଲିମ୍ ଦିଆଯାଇଛି । ୧୯୯୨-୯୩ ବର୍ଷରେ ବିଶ୍ୱ ବ୍ୟାଙ୍କ୍ ସହାୟତାରେ ୪୬ଟି ଜଳାଶୟରେ ୧୯,୫୫୯ ହେକ୍ଟର ଜଳାଞ୍ଚଳରେ ମତ୍ସ୍ୟଚାଷର ବିକାଶ କରାଯାଇଥିଲା । ଏଥିଲାଗି ୬୪୪ କୋଟି ଟଙ୍କା ବ୍ୟୟ ଅଟକଳ କରାଯାଇଥିଲା । ଏହି ପ୍ରକଳ୍ପ ଦ୍ୱାରା ୨ ହଜାର ମେଟ୍ରିକ୍ ଟନ୍ ମାଛ ଉତ୍ପାଦନ କରାଯାଇପାରିବ ।

୧୯୯୧ ଓ ୧୯୯୨-୯୩ ବର୍ଷରେ ୩୪·୮୧ ଲକ୍ଷ ଏବଂ ୬୩·୧୪ ଲକ୍ଷ ଚିଙ୍ଗୁଡ଼ି ଯାଆଁଳ ୩୨୫·୪୭ ହେକ୍ଟର ଓ ୬୯୩·୫୦ ହେକ୍ଟର ଜଳାଶୟରେ ସଂରକ୍ଷିତ କରାଯାଇଥିଲା ।

୧୯୯୩-୯୪ ବର୍ଷରେ ୬୪୦ ହେକ୍ଟର ଜଳାଶୟରେ ୫୭ ଲକ୍ଷ ଚିଙ୍ଗୁଡ଼ି ଯାଆଁଳ ଚାଷ କରାଯାଇଥିଲା ।

ବିଗତ ୪ ବର୍ଷ ମଧ୍ୟରେ ୬,୧୬୮·୨୮ ହେକ୍ଟର ଲୁଣି ଜଳ ଅଞ୍ଚଳର ବିକାଶ ସାଧନ କରାଯାଇଛି ।

୧୯୯୨-୯୩ ବର୍ଷ ସୁଦ୍ଧା ଏହି ଅଞ୍ଚଳର ୯,୬୧୨·୨୫ ହେକ୍ଟର ଥିଲା । ୧୯୯୩-୯୪ ବର୍ଷରେ ଅତିରିକ୍ତ ୩୬୬·୯୯ ହେକ୍ଟର ଜଳାଞ୍ଚଳରେ ବିକାଶ ସାଧନ କରାଯାଇଛି ।

ବିଶ୍ୱବ୍ୟାଙ୍କ୍ ସହାୟତାରେ ବାଲେଶ୍ୱର ଓ କଟକ ଜିଲ୍ଲାରେ ୧,୩୧୪ ହେକ୍ଟର ଅଞ୍ଚଳରେ ୬,୨୪୧ କୋଟି ଟଙ୍କା ବ୍ୟୟରେ ଚିଙ୍ଗୁଡ଼ି ଚାଷ କରାଯିବା ଲାଗି ନିଷ୍ପତ୍ତି ନିଆଯାଇଛି । ସମୁଦ୍ରରୁ ମାଛ ଧରିବା ଲାଗି ୧୯୯୨-୯୩ ମସିହା ସୁଦ୍ଧା ୪୮୦ କି. ମି. ବିଶିଷ୍ଟ ସମୁଦ୍ର ଅଞ୍ଚଳରୁ ୨,୯୭୮ଟି ଯନ୍ତ୍ର ଚାଳିତ ନୌକା ତଥା ୧୨,୮୧୦ଟି ସାଧାରଣ ନୌକା ୪୮୦ କି. ମି. ବିଶିଷ୍ଟ ସମୁଦ୍ର ଅଞ୍ଚଳରୁ ମାଛଧରା କାର୍ଯ୍ୟରେ ନିୟୋଜିତ କରାଯାଇଛି । ଏହି ମାଛର ପରିମାଣ ୧,୧୯,୩୭୬ ମେଟ୍ରିକ୍ ଟନ୍ ।

୧୯୯୦-୯୩ ବର୍ଷ ୧,୭୬୯ଟି ନୌକା ମୋଟର ଚାଳିତ କରାଯାଇଥିଲା ଓ ୧୯୯୩-୯୪ ବର୍ଷରେ ୮୦୦ଟି ଅଧିକ ନୌକା ମୋଟର ଚାଳିତ କରାଯିବାର ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି ।

ନଉରି, ପଞ୍ଚୁବିଶା, ଚୁଡ଼ାମଣି, ପଥରା ଶାବେଳିଆ, ପାଲୁର ଏବଂ ଋଷିକୁଲ୍ୟାଠାରେ ମାଛ ଜେଟ ନିର୍ମାଣ ଶେଷ ହୋଇଛି ।

ମତ୍ସ୍ୟଚାଷୀମାନଙ୍କ ପାଇଁ ଜାତୀୟ କଲ୍ୟାଣ ପାଣ୍ଠି ପ୍ରକଳ୍ପ ଜରିଆରେ ୧୯୯୨-୯୩ ବର୍ଷରେ ମାଛୁଦିଆ ଗାଁରେ ୧୨୦ଟି ସ୍ୱଳ୍ପ ମୂଲ୍ୟରେ ଗୃହ ନିର୍ମାଣ କରାଯାଇଛି । ଏତଦ୍ ବ୍ୟତୀତ ଚାଷୀମାନଙ୍କୁ ବିଶୁଦ୍ଧ ପାନୀୟ ଜଳର ସୁବିଧା ଏବଂ ଗୋଷ୍ଠୀ ଗୃହ ଇତ୍ୟାଦି ଯୋଗାଇ ଦିଆଯାଇଛି ।

୧୯୯୨-୯୩ ବର୍ଷରେ ୨୬ଟି ଇ.ଆର୍.ପି. କାଟ୍ମାରାନ୍ସ ପ୍ରବର୍ତ୍ତନ କରାଯାଇଥିଲା ଓ ଏଥିରେ ୨୦,୮୦୦ ଟଙ୍କା ରିହାତି ମିଳିଥିଲା ।

# ସପନା ଦେଖିଲା ସପନ

ଅରୁଣ ଚନ୍ଦ୍ର ମହାନ୍ତି

ରାତି ଅଧଟାରେ ବହଳ ନିଦରେ
ସପନା ଦେଖିଲା ସପନ ।
ଏତେ ରାତିଟାରେ କାହାକୁ କହିବ
କଥାକୁ ରଖିଲା ଗୋପନ ॥

ରାତି ପାହିଗଲା ସକାଳ ହୋଇଲା
ଆଖି ମଳି ମଳି ଉଠିଲା ।
ମନ ଦୁଃଖକରି ଘରଣୀ ପାଖରେ
ସପନ କଥାକୁ କହିଲା ॥

ଡାକ ପିଅନଟି ଦିନ ଦି'ଘଡ଼ିକି
ଚିଠି ନିଅ ନିଅ ଡାକିଲା ।
କେଉଁଠୁ ଆସିଛି କିଏ ଦେଲା କୁହ
ସପନା ପଚାରି ବୁଝିଲା ॥

ପଢ଼େଇ ଶୁଣିବ ଏଇ ଚିଠି ତା'ର
ଦୁଆର ଦୁଆର ବୁଲିଲା ।
ସବୁରି ପାଖରୁ ଫେରି ଆସିଲାରୁ
ମନ ମାରିଦେଇ ରହିଲା ॥

ଅଜଣା ଅଶୁଣା ବାବୁଟିଏ ଦେଖି
ତାଙ୍କରି ମୁହଁକୁ ଚାହିଁଲା ।
ପଢ଼ିଦିଅ ବାବୁ ଚିଠିଟି ମୋହର
ନିଉନ ହୋଇ ସେ କହିଲା ॥

ମାଇକ୍ରସ ପାଇଁ କରଜ କରିଛ
ସେପାଇଁ ଆସିଛି ଚିଠିଟି ।
ବାବୁଙ୍କ ମୁହଁରୁ ଶୁଣି ଶୁଣି କ୍ଷଣେ
ଶିଖିଗଲା ତା'ର ମନଟି ॥

ଆପାଠୁଆ ବୋଲି ସବୁରି ପାଖରେ
ହଟହଟା ଖାଲି ହେଉଛି ।
ଏଣିକି ଏଣିକି ସାବଧାନ ହେବ
ମନରେ ଚେତନା ପଶୁଛି ॥

କରଜରୁ କେତେ ଶୁଝି ଦେଇଛି
ରଖିନାହିଁ ତା'ର ଖବର ।
ଦିନକୁ ଦିନସେ ଚିନ୍ତା କରି କରି
ଶୁଖିତ ଯାଉଛି ଶରୀର ॥

ଏଣିକି ସପନା ଶପଥ କରିଛି
ନୈଶ୍ୟ ବିଦ୍ୟାଳୟେ ପଢ଼ିବ ।
ଗୀତା, ଭାଗବତ, ପୁରାଣ, କାହାଣୀ
ପଢ଼ି ସେ ମନରେ ରଖିବ ॥

ନିଜ ଚିଠି ନେଇ ପଢ଼େଇ ଦେବାକୁ
କରିବନି ଆଉ ଗୁହାରି ।
ବହି ଖାତା ଧରି ପଢ଼ିବା ପାଇଁକି
ନିତି ସଞ୍ଜେ ଯାଏ ବାହାରି ॥

ସେଇ ଦିନଠାରୁ ପଢ଼ିବା ନିଶାରେ
ସପନା ହେଲାଣି ଆତୁର ।
ନିଶ ଦାଢ଼ି ପଛେ ଉଠିଥାଉ ତା'ର
ମନକୁ କରିଛି ଟାଣୁଆ ।

ନିଜର ହିସାବ ନିଜେ କଷି କଷି
ଖାତାରେ ଲେଖେଇ ରଖୁଛି ।
ଦାର ଦୁଆରକୁ ଯିବିନାହିଁ ଆଉ ।
ଘରଣୀ ପାଖରେ କହୁଛି ॥

ଭଲ କଥା କହି ମନ ଖୁସି କରି
ସଭା ସମିତିରେ ବସୁଛି ।
ବୁଦ୍ଧିକୁ ଖଟେଇ ପାଞ୍ଚ ପଚିଶିରେ ।
ଦୋଷତ୍ରୁଟି ସବୁ ବାଛୁଛି ॥

ପା/ପୋ: ବାଙ୍କଟି,
ଜି: ଖୋର୍ଦ୍ଧା ।

# ସାହିତ୍ୟ ସଂସ୍କୃତିର ପ୍ରାଣପୀଠ 'ଉଦୟପୁର' ଏବଂ ଦାସିଆ ଅଜା

ଡାଃ ଗିରିଜା ଶଙ୍କର ଶ୍ରୀଚନ୍ଦନ ମହାପାତ୍ର

"ମୁଁ ଓଡ଼ିଆ, ମୋ ଭାଷା ଓଡ଼ିଆ, ମୋ ଜାତି ଓଡ଼ିଆ, ମୁଁ ଓଡ଼ିଶାର ସନ୍ତାନ, ମୋ ଦେହରେ ଓଡ଼ିଆ ରକ୍ତ ପ୍ରବାହିତ, ଓଡ଼ିଆ ଭାଷା-ସାହିତ୍ୟର ପ୍ରସାର ଏବଂ କଳା ସଂସ୍କୃତିର ସୁରକ୍ଷା ମୋର ପରମ କର୍ତ୍ତବ୍ୟ । ପ୍ରତ୍ୟେକ ଓଡ଼ିଆ ମୋର ଅତି ଆପଣାର" ବୋଲି ଗର୍ବ କରୁଥିବା କେତେଜଣ ଖାଣ୍ଟି ଓଡ଼ିଆ ଅଛନ୍ତି ? କେତେଜଣ ନିଜକୁ "ଓଡ଼ିଆ" ବୋଲି ପରିଚୟ ଦେବାକୁ ଆଗେଇ ଆସନ୍ତି ? ବରଂ ଆଜିର ଅତ୍ୟାଧୁନିକ ସମାଜରେ ସମସ୍ତେ ପାଶ୍ଚାତ୍ୟ ଶିକ୍ଷା-ସଭ୍ୟତା-ସଂସ୍କୃତିର ଅନୁକରଣ କରି ନିଜର ବଡ଼ିମା ଦେଖାଇ ହୁଅନ୍ତି । ନିଜ ମାତୃଭାଷାକୁ ଘୃଣା କରି ଇଂରାଜୀ, ହିନ୍ଦୀରେ, ବଙ୍ଗଳାରେ କଥା କହନ୍ତି । ନିଜ ପୁଅଝିଅଙ୍କୁ ଇଂରାଜୀ ମିଡ଼ିୟମ ସ୍କୁଲରେ ପଢ଼ାଇ ସାହେବ, ମେମ୍ ବନାଉଛନ୍ତି । ଆମ ଓଡ଼ିଶାରେତ ଏବେ ଇଂରାଜୀ ମିଡ଼ିୟମ ସ୍କୁଲ ଛତୁଭଳି ଫୁଟି ଉଠିଲାଣି । ଓଡ଼ିଆ ସ୍କୁଲ, ଶିକ୍ଷାଦାନ ବ୍ୟବସ୍ଥା ଦିନକୁଦିନ ବିପର୍ଯ୍ୟସ୍ତ ହୋଇ ପଡୁଥିବା ବେଳେ ସାଧାରଣ ରିକ୍ସାବାଲାଟିଏ ବି ତା'ର ପୁଅଝିଅଙ୍କୁ ଇଂରାଜୀ ମିଡ଼ିୟମ ସ୍କୁଲରେ ପଢ଼ାଇବାକୁ ଉତ୍କଣ୍ଠିତ ହେଉଛି । କାରଣ ଦିଅକ୍ଷର ଇଂରାଜୀ ନପଢ଼ିଲେ ଆଜିକାଲି ଚାକିରି ମିଳିବା ତ ଦୂରର କଥା ବ୍ୟବସାୟ ବି କରିପାରିବନି । ଆମ ଓଡ଼ିଶାରେ ଅଣଓଡ଼ିଆ ଭାଷାର ପ୍ରଭାବ ବଢ଼ି ପାରୁଛି । ସୀମାନ୍ତ ଅଞ୍ଚଳରେ ଓଡ଼ିଆ ଭାଷାର ବିଲୋପ ପାଇଁ ଚକ୍ରାନ୍ତ ଚାଲିଛି । ରାଉରକେଲା ଭଳି ଶିଳ୍ପ ସମୃଦ୍ଧ ନଗରୀରେ ଓଡ଼ିଆ ଭାଷାର ଗୁରୁତ୍ୱ କମିଯାଉଛି । ଓଡ଼ିଆ ପୁଅ ହୋଇ ସେଠାରେ ହିନ୍ଦୀ, ବଙ୍ଗଳା କିମ୍ବା ତେଲୁଗୁ ନକହିଲେ ଚଳୁନାହିଁ । ଓଡ଼ିଆ ଅଫିସରମାନେ ଓଡ଼ିଆଙ୍କ ସହିତ ହିନ୍ଦୀ, ଇଂରାଜୀରେ କଥା କହିବାକୁ ଗୌରବ ମଣନ୍ତି ।

ଏଇ ପରିପ୍ରେକ୍ଷୀରେ ଓଡ଼ିଆ ଭାଷା-ସାହିତ୍ୟ-ସଂସ୍କୃତି ଏବଂ ଐତିହ୍ୟର ସୁରକ୍ଷା ପାଇଁ ଆନ୍ଦୋଳନ କରାଯିବାର ଯଥେଷ୍ଟ ଆବଶ୍ୟକତା ରହିଛି । ଏଥି ପାଇଁ ସାହିତ୍ୟ-ସଂସ୍କୃତିର ପ୍ରାଣପୀଠ, ଉଦୟପୁରର ଉଦିତ ସୂର୍ଯ୍ୟ, ସଂସ୍କୃତି ସାଧକ, ମନ-ପ୍ରାଣ-ହୃଦୟରେ ଖାଣ୍ଟି ଓଡ଼ିଆ ଶ୍ରୀଯୁକ୍ତ ଦାଶରଥୀ ପଟ୍ଟନାୟକ ହିଁ ଯେ ଏକମାତ୍ର ପ୍ରେରଣାର ଉତ୍ସ, ଏଥିରେ ସନ୍ଦେହର ଅବକାଶ ନାହିଁ ।

ଅବଶ୍ୟ ଦାଶରଥୀ ପଟ୍ଟନାୟକ କହିଲେ କେତେଙ୍କୁ ଅଚିହ୍ନା ଅଚିହ୍ନା ବୋଧ ହୋଇପାରେ । ମାତ୍ର ଦାସିଆ ଅଜା, କଣା ଅଜା, ଏକ ଆଖିଆ ବୁଢ଼ା, କିଙ୍ଗ୍ ଲାଇବ୍ରେରୀ ପ୍ଲସିଂ ମ୍ୟୁଜିୟମ (ଜୀଅନ୍ତା ପାଠାଗାର ଚଳନ୍ତା ସଂଗ୍ରହାଳୟ) କହିଲେ ବେଶ୍ ଚିହ୍ନା ଜଣା, ଅତି ଆପଣା ଆପଣା ଲାଗେ । ଓଡ଼ିଶାରେ ଏମିତି ଜଣେ କେହି କବି, ଲେଖକ, ଲେଖିକା, ସମାଜସେବୀ ନଥିବେ ଯେକି ତାଙ୍କଠାରୁ ପୋଷ୍ଟ କାର୍ଡ଼ ଖଣ୍ଡେ ପାଇନଥିବେ । ନିଜର ଲେଖା ପାଇଁ ଅସୀମ ପ୍ରେରଣା ଭରା ଆଶିଷ ଟିକେ ପାଇନଥିବେ । ଦଶ ପଇସିଟେ ଠାରୁ ଦଶ ଟଙ୍କା ପର୍ଯ୍ୟନ୍ତ ଦାନ ପଠାଇବାକୁ ଆକୁଳ ଅନୁରୋଧ କରା ପତ୍ରଟିଏ ପାଇନଥିବେ ।

ଗୋଟିଏ ଆଖି ନାହିଁ । ପରିଧାନ ଆଣ୍ଠୁ ଛୁଉଁ ନଥିବା ପାକଲା ଖୋଦ୍ଧି ଗାମୁଛା, ଦେହରେ ଗଞ୍ଜିଟେ, ଗାମୁଛାଟେ, ମୁଣ୍ଡରେ ପଗଡ଼ି, ହାତରେ ଅଚାଞ୍ଛା ବାଉଁଶ ଠେଙ୍ଗା, କାନ୍ଧରେ ଝୁଲାମୁଣି । ତା'ଭିତରେ କଲମ, ଡାଏରୀ, ଅଭିବର୍ଦ୍ଧକ କାଚ, କିଛି ପୋଷ୍ଟ କାର୍ଡ଼ ଏବଂ ଅନ୍ୟାନ୍ୟ ପଦାର୍ଥ । ପାଦରେ ନଥାଏ ଜୋତା, ଖରା, ବର୍ଷାରେ ଦରକାର କରନ୍ତିନି ଛତା, ଦେଖିଲା ମାତ୍ରେ ହସି ହସି କହନ୍ତି କଥା । ପ୍ରତି କଥାରେ ଯୋଡ଼ି ହୋଇଥାଏ ନଥା । କବି ଲେଖକମାନଙ୍କୁ ଉତ୍ସାହିତ କରି ସେ ଲେଖନ୍ତି ଅସଂଖ୍ୟ ଚିଠିଓ୍ୱା ବାର୍ତ୍ତା, ପସନ୍ଦ କରନ୍ତିନି ପରମୁଖା ପେକ୍ଷୀତା । ବହୁ ନବ ପ୍ରତିଭାଙ୍କର ସେ ସ୍ରଷ୍ଟିକର୍ତ୍ତା । ଏଭଳି ଜଣେ ବ୍ୟକ୍ତି ଯେ ଓଡ଼ିଶାରେ ଅଛନ୍ତି ଏ କଥା କିଏ ବା କାହିଁକି ବିଶ୍ୱାସ କରିବ ? ମୁଁ ବି ପ୍ରଥମେ ପ୍ରଥମେ ବିଶ୍ୱାସ କରିନଥିଲି । ଅଥଚ ସେ ହେଉଛନ୍ତି ପାଠାଗାର ଆନ୍ଦୋଳନର ପ୍ରଧାନ ପୁରୋଧା, ସଂସ୍କୃତି ସାଧକ, କଳାନୁରାଗୀ, ସାହିତ୍ୟର ବାର୍ତ୍ତାବହ, ସଂଗ୍ରାହକ, ନିଜର ବିଶ୍ୱାସ ଏବଂ କର୍ମ ନିଷ୍ଠାରେ ଅଟଳ ରହିଥିବା ସ୍ୱାଧୀନତା ସଂଗ୍ରାମୀ, ଓଡ଼ିଆ ଜାତିର ଅନ୍ୟତମ କର୍ଣ୍ଣଧାର, ଜଗତର ନାଥ ଶ୍ରୀଜଗନ୍ନାଥଙ୍କ ଦାସାନୁଦାସ ଶ୍ରୀଯୁକ୍ତ ଦାଶରଥୀ ପଟ୍ଟନାୟକ । ନିଜକୁ କଣା ଦାସିଆ ରୂପେ ପରିଚିତ କରାଇବାରେ ଟିକେ ହେଲେ କୁଣ୍ଠା ନାହିଁ । ମନରେ ଏତେଟିକେ ଗର୍ବ ନାହିଁ । ନିଜକୁ ହୀନ, ଅକିଞ୍ଚନ ବୋଲି ମୁକ୍ତ କଣ୍ଠରେ ସ୍ୱୀକାର କରନ୍ତି । ତାଙ୍କୁ ଭେଟିବା ପରେ ମୁଁ ଯେଉଁ ଅନୁଭୂତି ହାସଲ କଲି ସେକଥା ଶୁଣିବାକୁ ନିଶ୍ଚୟ ଆପଣମାନଙ୍କ ମନରେ ବ୍ୟଗ୍ରତା ଆସିଯାଇଥିବ ।

"ଉଦୟପୁର", ପୂର୍ବତନ ପୁରୀ ଜିଲ୍ଲା ଏବର ନୟାଗଡ଼ ଜିଲ୍ଲାର ପ୍ରାକୃତିକ ରଙ୍ଗଶାଳା ଦଶପଲ୍ଲା ଅଞ୍ଚଳରେ ଅବସ୍ଥିତ ନୂଆଗାଁ ବ୍ଲକ୍ ଅନ୍ତର୍ଗତ ଏକ ପଲ୍ଲୀ ଗ୍ରାମ । ବଣ, ପାହାଡ଼ ଘେରା ଶାନ୍ତ କମନୀୟ ଏଇ କ୍ଷୁଦ୍ର ଗ୍ରାମଟି ଯେ ଐତିହାସିକ ଉତ୍ଥାନ ପତନ, ସଭ୍ୟତାର ଜନ୍ମ ବିବର୍ତ୍ତନର ସ୍ମୃତି ବହନ କରି ଶିକ୍ଷା-ସଂସ୍କୃତିର ପ୍ରାଣପୀଠ ରୂପେ ପରିଚିତ ଲାଭ କରି ପାରିଛି, ଏକଥା ପ୍ରତ୍ୟକ୍ଷଦର୍ଶୀଙ୍କ ବିନା ଅନ୍ୟ କେହି ହୁଏତ ସହଜରେ ବିଶ୍ୱାସ କରିନପାରନ୍ତି । ଉଦୟପୁର ଏବଂ ଦାସିଆ ଅଜାଙ୍କ ସମ୍ପର୍କରେ

ବନ୍ଧୁମାନଙ୍କଠାରୁ ଶୁଣି ମୁଁ ମଧ୍ୟ ପ୍ରଥମେ ବିଶ୍ୱାସ କରିନଥିଲି । କିନ୍ତୁ ଉଦୟପୁର ପରିଦର୍ଶନ କରି ମୁଁ ଯେଉଁ ଅନୁଭୂତି ହାସଲ କରିଛି ତାହା ଚିର ଅବିସ୍ମରଣୀୟ ହୋଇ ରହିବ ।

ବାସ୍ତବରେ ଉଦୟପୁର ବକ୍ଷରେ ହିଁ ସାହିତ୍ୟ-ସଂସ୍କୃତି, କଳା-ସୌନ୍ଦର୍ଯ୍ୟର ସୂର୍ଯ୍ୟ ଚିର ଦେଦୀପ୍ୟମାନ । ଓଡ଼ିଆ ସଂସ୍କୃତିର ଉଦୟାଚଳ ଉଦୟପୁର । କବି, ଲେଖକ, ସାହିତ୍ୟିକମାନଙ୍କର ପ୍ରେରଣାର ଉତ୍ସ, ବୁଦ୍ଧିଜୀବୀ, ଗବେଷକମାନଙ୍କର ସ୍ୱପ୍ନର ସ୍ୱର୍ଗ । ସୌନ୍ଦର୍ଯ୍ୟ ପିପାସୁ, ପ୍ରକୃତିପ୍ରେମୀମାନଙ୍କର କଳ୍ପନାର ଅଳକା ପୁରୀ । ପୌରାଣିକ, କାହାଣିକ କିମ୍ବଦନ୍ତୀ, ଆଖ୍ୟାୟିକାର ତଥ୍ୟ କେନ୍ଦ୍ର, ପ୍ରାଗୈତିହାସିକ ସଭ୍ୟତାର ସ୍ମୃତିପୀଠ, ବେଦ, ଉପନିଷଦ, ପୁରାଣର ଭଣ୍ଡାରଘର, କାବ୍ୟ, କବିତା, ଆଧୁନିକ ସାହିତ୍ୟର ଆଧାରସ୍ଥଳୀ, ସାମାଜିକ-ସଂସ୍କୃତିକ ଚେତନାର ପ୍ରେରଣା ସ୍ଥଳ, ବିଶେଷ କରି ଓଡ଼ିଶୀ କଳା-ସଂସ୍କୃତି-ଐତିହ୍ୟ, ପରମ୍ପରା ଏବଂ ସାମାଜିକ ବିକାଶର କର୍ଣ୍ଣଧାର, ପାଠାଗାର ଆନ୍ଦୋଳନର ମୁଖ୍ୟ ପୁରୋଧା, ସଂସ୍କୃତି ସାଧକ, କବି, ଲେଖକଙ୍କର ପ୍ରେରଣାଦାତା, ସାର୍ବଜନୀନ ବଣା ଅଜା ଦାସାନୁ ଦାସ ଦାସିଆ ଓରଫ ଦାଶରଥୀ ପଟ୍ଟନାୟକଙ୍କର ଜନ୍ମଭୂମି, କର୍ମଭୂମି, ତଥା ସାଧନାର ଅମରାବତୀ ।

ଉଦୟପୁର ଯିବାକୁ ହେଲେ ଓଡ଼ିଶାର ରାଜଧାନୀ ଭୁବନେଶ୍ୱର ବା କଟକରୁ ଦଶପଲ୍ଲା, ବଲାଙ୍ଗୀର, ଫୁଲବାଣୀ ଆଡ଼କୁ ଯାଉଥିବା ଓ.ଆର.ଟି.ସି., ସରକାରୀ, ବେସରକାରୀ ବସରେ ନୂଆଗାଁ ପର୍ଯ୍ୟନ୍ତ ଯାଇ ସେଠାରୁ ତିନି କିଲୋମିଟର ସାଇକେଲରେ ବା ପାଦରେ ଚାଲିଚାଲି ପହଞ୍ଚିବାକୁ ହୁଏ । କେହି କେହି ନୟାଗଡ଼ ପର୍ଯ୍ୟନ୍ତ ଯେକୌଣସି ବସରେ ଯାଇ ସେଠାରୁ ଟ୍ରେକର ଯୋଗେ ନୂଆଗାଁ ଯାଇ ଥାଆନ୍ତି । ନୟାଗଡ଼ରୁ ନୂଆଗାଁ ପଚିଶ କିଲୋମିଟର ରାସ୍ତା ।

ନୂଆଗାଁରେ ପହଞ୍ଚି ଉଦୟପୁର ଯିବା କଥା କହିଲେ ଅନେକ ଲୋକ ଆଗେଇ ଆସିବେ ଆପଣଙ୍କୁ ନେଇ ଦାସିଆ ଅଜାଙ୍କ ପାଖରେ ପହଞ୍ଚାଇ ଦେବାକୁ । ଆଗରୁ ଚିଠି ଦେଇ ଜଣାଇ ଥିଲେ ନିଜେ ଅଜା, ନଚେତ୍ ତାଙ୍କ ପୁଅ ପ୍ରବୀର ବାବୁ ଆପଣଙ୍କୁ ନେବା ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା କରିଥାନ୍ତି । ମୁଁ ଏକଦା ଅଚାନକ ନୂଆଗାଁରେ ପହଞ୍ଚି ଯାଇ ଅଜାଙ୍କ ପାଖକୁ ଯିବା ପାଇଁ ବ୍ୟାକୁଳ ହୋଇ ପଡ଼ିଲି, ସେତେବେଳେ ଶୁଣିଲି ଯେ, ଉଦୟପୁର ଯିବା ପାଇଁ କୌଣସି ପ୍ରକାର ସୁବିଧା ନାହିଁ । ରିକ୍ସା ଚାଲେନି । ଟ୍ରେକର, ଟେମ୍ପୋ, ବସ୍‌ର ତ ପ୍ରଶ୍ନ ଉଠେନା । ଅତଏବ୍ ଗାନ୍ଧିଜୀଙ୍କ ପଦଯାତ୍ରା ଫର୍ମୁଲା ଏକାନ୍ତ ଉପଯୋଗୀ । ଯାହାହେଉ ନୂଆଗାଁର ଶ୍ରୀମାନ୍ ପ୍ରଶାନ୍ତ (ରେଣି) ମୋତେ ସଙ୍ଗରେ ନେଇ ଉଦୟପୁର ଗଲେ । ସେତେବେଳକୁ ଦିନ ବାରଟା କି ଗୋଟାଏ ହେବ । ପ୍ରାୟ ଦୁଇଟା ସମୟରେ ମୁଁ ଯାଇ ଦାସିଆ ଅଜାଙ୍କୁ ଆବିଷ୍କାର କଲି ଗଦାଏ ପୋଷ୍ଟ କାର୍ଡ, ଅନ୍ତର୍ଦେଶୀୟ କାର୍ଡ, କଲମ, ଡାଏରୀ ଗହଳରେ । ଠିକଣା ଦେଖି ଚିଠି ଲେଖିବାରେ ବ୍ୟସ୍ତ ଥାନ୍ତି । ବିଶ୍ୱାସ ଆସିଲା ଯେ, ସେ ପ୍ରତିଦିନ ଶତାଧିକ ଚିଠି ଲେଖି ସମଗ୍ର ଓଡ଼ିଶାର ପୁରପଲ୍ଲୀକୁ ପଠାନ୍ତି । ଲେଖକ ଓ ଲେଖିକାଙ୍କୁ ଉତ୍ସାହିତ କରନ୍ତି । ପ୍ରେରଣା ଦିଅନ୍ତି । ମୁଁ ମୋର ପରିଚୟ ଦେଇ ଭକ୍ତି ଭୂମିଷ୍ଠ ପ୍ରଣାମ କରିବା ମାତ୍ରେ ସେ ମୋତେ କୁଣ୍ଢାଇ ପକାଇଲେ । ଆନନ୍ଦ ଗଦ୍‌ଗଦ୍ ହୋଇ କହିଲେ, "ଗିରିଜାରେ ! ମୁଁ ତୋରି ବାଟକୁ ଅନାଇ ରହିଥିଲି । ଯାହାହେଉ, ତୁ ଆସିବୁ ତୋର ଅବଶୋଷ ମେଣ୍ଟିଲା । ପୂର୍ବରୁ ମୋ ଲେଖାକୁ ପ୍ରଶଂସା କରି ମୋତେ ସେଠାକୁ ଥରକ ପାଇଁ ହେଲେ ଯାଇ ବୁଲି ଆସିବାକୁ ଅନୁରୋଧ କରି ଅନେକ ଚିଠି ଲେଖିଥିଲେ । ଚାକିରି, ସାଂସାରିକ ଜଞ୍ଜାଳ ଭିତରେ ବୁଡ଼ି ରହି ମୁଁ ଯାଇପାରୁ ନଥିଲି । ଏଥର ସେଠାରେ ପହଞ୍ଚି ତାଙ୍କୁ ଦର୍ଶନ କରିବାର ପ୍ରବଳ ଇଚ୍ଛା ପୂରଣ ହୋଇଥିବାରୁ ମୁଁ ନିଜକୁ ଗର୍ବିତ ମନେ କଲି । ପାଠାଗାର ବ୍ୟବସ୍ଥାପକ ଶ୍ରୀମାନ୍ ପ୍ରମୋଦ ଗୋଛାୟତ, ଅଜାଙ୍କର ଅନୁଗତ ସେବକ ଶ୍ରୀମାନ୍ ଅନ୍ତୁର ମୋ ସତ୍କାରରେ ଲାଗି ପଡ଼ିଲେ । ଖୁଆପିଆ ସରିବା ପରେ ଅଜା ମୋ ସହିତ ଗପିବାକୁ ଆରମ୍ଭ କରିଦେଲେ । ତାଙ୍କର ପ୍ରତି କଥାରେ ଭରି ରହିଥାଏ ଓଡ଼ିଆ ସ୍ୱାଭିମାନ, ସଂସ୍କୃତି ସୁରକ୍ଷାର ଅନୁଚିନ୍ତା, ନୂତନ ପ୍ରାଚୀନ ଗ୍ରନ୍ଥ ସଂଗ୍ରହର ଆକାଂକ୍ଷା, ସାଧନାର ନିଷ୍ଠା, ପରମୁଖାପେକ୍ଷୀ ବୃତ୍ତି ପ୍ରତି ବୀତସ୍ପୃହତା ।

ତାପରେ ସେ ତାଙ୍କର ସନ୍ତାନମାନଙ୍କ ସହିତ ମୋତେ ପରିଚିତ କରାଇଦେଲେ । ପ୍ରଥମେ ତାଙ୍କର ବଡ଼ପୁଅ ବାଣୀନିଧିଙ୍କୁ ସାକ୍ଷାତ୍ କରି ମୁଁ ବିସ୍ମିତ ହୋଇପଡ଼ିଲି । 'ବାଣୀନିଧି' ଅର୍ଥାତ୍ ବାଣୀନିଧି ପାଠାଗାର । ଜନ୍ମ ୧୯୬୨ରେ । ତେଜୋଦିପ୍ତ ଚେହେରା, ବର୍ତ୍ତୁଳ ଦେହ, ବିଶାଳ ଉଦର, ପ୍ରଶସ୍ତ ବକ୍ଷ । ସ୍ୱଚ୍ଛନ୍ଦରେ ଚଳପ୍ରଚଳ ପାଇଁ ସ୍ଥାନର ଅଭାବ । ପୃଥିବୀର ବିଭିନ୍ନ ଭାଷାର ଅଭିଧାନ ସମେତ ପୃଥକ ପୃଥକ ବିଭବର ପଞ୍ଚାଶ ହଜାର ପୁସ୍ତକ, ସାପ୍ତାହିକ, ପାକ୍ଷିକ, ମାସିକ, ତ୍ରୈମାସିକ ଏବଂ ବିଭିନ୍ନ ସମୟରେ ପ୍ରକାଶିତ ପତ୍ରପତ୍ରିକା, ସ୍ମରଣିକା ଓ ସଙ୍କଳନଗୁଡ଼ିକର ସଂଖ୍ୟା ପ୍ରାୟ ... ହଜାର, ବିଭିନ୍ନ ଶିରୋନାମାର ବିରଳ ପୁସ୍ତକ ତିନି ହଜାର । ... ବ୍ୟତୀତ ପ୍ରତିଦିନ ଓଡ଼ିଶାର ବିଭିନ୍ନ ପ୍ରାନ୍ତରୁ ପ୍ରକାଶିତ ଦୈନିକ ସମ୍ବାଦପତ୍ର ଏଠାକୁ ନିୟମିତ ଆସେ । ଆପଣମାନେ ଅନୁମାନ କରିପାରୁଥିବେ ବାଣୀନିଧିଙ୍କ କଳେବର କେତେ ବିରାଟ ! ଦୁଃଖର କଥା ଯେ, ପୁସ୍ତକଗୁଡ଼ିକୁ ସଜ୍ଜିତ କରି ନିରାପଦ ଭାବେ ରଖିବାକୁ ସ୍ଥାନର ଅଭାବ ।

ଦାସିଆ ଅଜାଙ୍କର ଦ୍ୱିତୀୟ ସନ୍ତାନ ଶ୍ରୀଅରବିନ୍ଦ । ଅର୍ଥାତ୍ ଶ୍ରୀଅରବିନ୍ଦ ସଂଗ୍ରହାଳୟ । ଭିତରେ ପ୍ରବେଶ କରି ମୁଁ କିଛି ସମୟ ପାଇଁ ଅନୁଭବ କଲି ସତେ ଯେପରି ମୁଁ ପ୍ରାଗୈତିହାସିକ ଯୁଗର ଗିରିଗହ୍ୱର ମଧ୍ୟରେ ବିଚରଣ କରୁଛି । ସମସ୍ତ ବିସ୍ମୃତ ଇତିହାସର ଅଳସ ଭଙ୍ଗୀ, ସଭ୍ୟତାର ଦୀର୍ଘ ଦିନ ଉଠାଣି ଦେଇ ପୁଣି ସାମ୍ପ୍ରତିକ ପରିବେଶକୁ ଫେରି ଆସିଲି । ଏଠାରେ କ'ଣ ... ନାହିଁ । ମୁଁ ଅନେକ ଭାବି ମଧ୍ୟ ଠିକ୍ କରି ପାରିଲି ନାହିଁ । ... ସୃଷ୍ଟି ୧୯୭୩ ମସିହାରେ । ପ୍ରାଗୈତିହାସିକ, ପ୍ରାଚୀନ ପ୍ରସ୍ତର ଯୁଗରୁ ଅଦ୍ୟାବଧି ମଣିଷ ତଥା ପ୍ରକୃତି ସୃଷ୍ଟ, ବ୍ୟବହୃତ ... ଦ୍ରବ୍ୟର ନମୁନା ଏଠାରେ ବିଦ୍ୟମାନ । ବିଭିନ୍ନ ସଭ୍ୟତାର ... ସଂସ୍କୃତି, ଶିଳ୍ପ, ଭାସ୍କର୍ଯ୍ୟ, ହସ୍ତକର୍ମର ନମୁନା, ଭାରତ ... ବିଦେଶରେ ପ୍ରଚଳିତ ପ୍ରାଚୀନ ଏବଂ ଆଧୁନିକ ମୁଦ୍ରା, ପ୍ରସ୍ତର ...

ଅସ୍ତ୍ରଶସ୍ତ୍ରଠାରୁ ଖଣ୍ଡା, ତୋପ, ରାଇଫଲ, ବୋମା, ଟଙ୍ଗା, ସୁନା, ରୁପାର ମୁଦ୍ରା, ଆଦିବାସୀ ତଥା ବିଭିନ୍ନ ସମ୍ପ୍ରଦାୟର ସ୍ତ୍ରୀମାନେ ବ୍ୟବହାର କରୁଥିବା ଅଳଙ୍କାର, ବିଭିନ୍ନ ପାନ, ସିଗାରେଟ୍, ଦିଆସିଲି, ଧୂପବତୀ ଖୋଳ, କ୍ୟାଲେଣ୍ଡର, ପିଲାଙ୍କର ଯାବତୀୟ ଖେଳନା ଏଠାରେ ମହଜୁଦ୍ ରହିଛି ।

ଭିନ୍ନ ଯୁଗର ଧାତବ ପଦାର୍ଥ, ଉଦ୍ଭିଦର ମୂଳ, ପତ୍ର, କାଣ୍ଡ, ଜୀବଜନ୍ତୁଙ୍କର ହାଡ଼, ଚମ, ଦାନ୍ତ, ଆଦିବାସୀ କଳା ଓଡ଼ିଶୀ ସଂସ୍କୃତିର ବିଭିନ୍ନ ନମୁନା, ମାଟି, କାଠ, କାଗଜ, ବାଉଁଶ, ବେତ, ଧାତୁ ନିର୍ମିତ ଶତାଧିକ ବସ୍ତୁ, ବିଭିନ୍ନ ପ୍ରାଣୀଙ୍କ କଙ୍କାଳ, ଚିତ୍ର, ପଟଚିତ୍ର, ମାନଚିତ୍ର, ପଥରର ମୂର୍ତ୍ତି, ପ୍ରାଚୀନ, ମଧ୍ୟଯୁଗୀୟ ଏବଂ ଆଧୁନିକ ସଙ୍ଗୀତର ଯନ୍ତ୍ର, ବାଦ୍ୟ, ଭାରତୀୟ ଏବଂ ବୈଦେଶିକ ଡାକଟିକେଟ, ବିଭିନ୍ନ ତୀର୍ଥସ୍ଥାନର ମାଟି, ଜଳ ମହାପୁରୁଷମାନଙ୍କର ସ୍ମୃତି, ଫଟୋଚିତ୍ର, ବିଭିନ୍ନ ଦେଶର ମାନଚିତ୍ର, ମାପତୌଲର ନମୁନା, ଅସଂଖ୍ୟ ପ୍ରକାର ମାଟି ଦୀପ, ବିଭିନ୍ନ ପ୍ରକାର ଖାଦ୍ୟ ଶସ୍ୟ, ଉଦ୍ଭିଦବୀଜର ନମୁନା, "ବିଚିତ୍ର ବିପଣୀ" ସମେତ ପାଞ୍ଚ ହଜାରରୁ ଉର୍ଦ୍ଧ୍ୱ ତାଳପତ୍ର ପୋଥି, ମୂଲ୍ୟବାନ ବିବରଣୀ, ଚିଠିପତ୍ରର ନକଲ ଏଠାରେ ସଂଗୃହିତ କରି ରଖିପାରିବା କମ୍ ଆଶ୍ଚର୍ଯ୍ୟର କଥା ନୁହେଁ । ଜଣେ ଲୋକ ନିଜର ଅଧ୍ୟବସାୟ ବଳରେ ଏଭଳି ଏକ ମହାର୍ଘ ସଂଗ୍ରହାଳୟ ପ୍ରତିଷ୍ଠା କରିଥିବା କଥା କେବଳ ପ୍ରତ୍ୟକ୍ଷଦର୍ଶୀ ହିଁ ବିଶ୍ୱାସ କରିପାରିବେ । ସଂଗ୍ରହାଳୟର ପରିଚ୍ଛନ୍ନତା ସକାଶେ ସ୍ଥାନ ଏବଂ ଆସବାବ ପତ୍ରର ଅଭାବ ରହିଛି ।

ତାଙ୍କର ତୃତୀୟ ସନ୍ତାନ ହେଉଛନ୍ତି ଯଦୁମଣି, ଅର୍ଥାତ୍ ଯଦୁମଣି ସାହିତ୍ୟ ସଂସଦ । ୧୯୭୫-୭୬ ମସିହାରେ ପ୍ରତିଷ୍ଠିତ । ଏହାର ଆନୁକୂଲ୍ୟରେ ଆଲୋଚନା ଚକ୍ର, ସେମିନାର, କବି ସମ୍ମିଳନୀ, ଗବେଷଣା, ପାଠ୍ୟବିବିଣୀ ଏବଂ ବିଭିନ୍ନ ପ୍ରତିଯୋଗିତା ଆୟୋଜନ କରାଯାଏ । ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷଣ, ସଙ୍କଳନ, ସ୍ମରଣିକା ପ୍ରକାଶନ, ଯୋଗ୍ୟ, ପ୍ରତିଭାଦୀପ୍ତ ବ୍ୟକ୍ତିମାନଙ୍କୁ ମାନପତ୍ର, ଉପାୟନ, ଉପାଧି ପ୍ରଦାନ, ସେମାନଙ୍କର ଜୀବନୀ ସଙ୍କଳନ, ଦୁଃସ୍ଥ କବି, କଳାକାର, ଲେଖକ ଲେଖିକାଙ୍କୁ ସାହାଯ୍ୟ, ବିକାଶୋନ୍ମୁଖୀ ଅନୁଷ୍ଠାନମାନଙ୍କୁ ଅନୁଦାନ ପ୍ରଦାନ ଆଦି ଏଇ ସଂସଦ ମାଧ୍ୟମରେ କରାଯାଏ । ଏତେବଡ଼ ଗ୍ରନ୍ଥାଗାର, ସଂଗ୍ରହାଳୟ ଏବଂ ସାହିତ୍ୟ ସଂସଦର ଜନ୍ମଦାତା, ପାଳନ କର୍ତ୍ତା, ସଂରକ୍ଷକ ଆମର ପ୍ରିୟ ଦାସିଆ ଅଜା । ଏଇ ଅନୁଷ୍ଠାନଗୁଡ଼ିକ ପାଇଁ ସେ ସର୍ବସ୍ୱ ଦାନ କରି ଦେଇଛନ୍ତି । ଦେହର ରକ୍ତକୁ ପାଣି କରି ନିଗାଡ଼ି ଦେଇଛନ୍ତି । ନିଜର ସବୁ ସୁଖ ସ୍ୱାଚ୍ଛନ୍ଦ୍ୟକୁ ଜଳାଞ୍ଜଳି ଦେଇଛନ୍ତି । ଶୟନେ ସ୍ୱପନେ ଅବା ଜାଗରଣେ ତାଙ୍କର ସେଇ ଗୋଟିଏ ଚିନ୍ତା । ଅନୁଷ୍ଠାନର ରକ୍ଷଣାବେକ୍ଷଣ, ସାହିତ୍ୟ-ସଂସ୍କୃତିର ସୁରକ୍ଷା ଓ ବିକାଶ ।

୧୯୦୬ ମସିହାରେ ଜନ୍ମଲାଭ କରି ପାରିବାରିକ ତଥା ଆର୍ଥିକ ବିଡ଼ମ୍ବନା ହେତୁ ଉଚ୍ଚଶିକ୍ଷା ଲାଭରୁ ବଞ୍ଚିତ ହୋଇ ମଧ୍ୟ ସେ ଆଜି ଅଗଣିତ ଉଚ୍ଚ ଶିକ୍ଷିତ, ବୁଦ୍ଧିଜୀବୀ, କବି, ଲେଖକ, ଗବେଷକମାନଙ୍କର ଅସୀମ ପ୍ରେରଣାର ଉତ୍ସ ପାଲଟି ଯାଇଛନ୍ତି । ଇଚ୍ଛା କରିଥିଲେ ସେ ତତ୍କାଳୀନ ଇଂରେଜ ସରକାରଙ୍କ ଅଧୀନରେ ଚାକିରି କରି ବେଶ୍ ଆରାମରେ କାଳାତିପାତ କରି ପାରିଥାନ୍ତେ । ମାତ୍ର ଚାକିରି ମୋହ ତାଙ୍କୁ ବାନ୍ଧି ରଖି ପାରି ନାହିଁ । ସାହିତ୍ୟ-ସଂସ୍କୃତିର ବିକାଶ, ଐତିହ୍ୟର ସୁରକ୍ଷାରେ ସେ ନିଜକୁ ନିୟୋଜିତ କରିଛନ୍ତି । କର୍ମ ହିଁ ତାଙ୍କ ଜୀବନର ଧର୍ମ । ନିକମା ହୋଇ ବସି ରହିବାକୁ ସେ ପସନ୍ଦ କରନ୍ତିନି । ନିଜକାମ ନିଜେ କରିବାକୁ ଗୌରବ ମଣନ୍ତି । ଉଭର ଅଶିରେ ପଦାର୍ପଣ କରି ମଧ୍ୟ ସେ କର୍ମ ଚଞ୍ଚଳ । ଗୋଟିଏ ଆଖିରେ ଅଭିବର୍ଦ୍ଧକ କାଚ ସାହାଯ୍ୟରେ ବିଭିନ୍ନ ବହି, ପତ୍ରିକା, ସମ୍ବାଦପତ୍ର ପଢ଼ନ୍ତି । ସ୍ରଷ୍ଟାମାନଙ୍କୁ ପ୍ରେରଣା ଦେଇ ଚିଠି ଲେଖନ୍ତି । ଓଡ଼ିଶାର ପ୍ରତ୍ୟନ୍ତପଲ୍ଲୀରେ ଥିବା ଅଗଣିତ କବି ଲେଖକଙ୍କର ଠିକଣା ତାଙ୍କ ଡାଏରୀରେ, ସବୁ ଅଞ୍ଚଳରେ ପିନ୍ କୋଡ୍ ତାଙ୍କ ଜିଭ ଅଗରେ କି ଅଦ୍ଭୁତ ସ୍ମରଣ ଶକ୍ତି ସତେ ? ଓଡ଼ିଶାର ସବୁ ଅଞ୍ଚଳରେ ପଦଯାତ୍ରା କରି, ବିଭିନ୍ନ ପ୍ରକୃତିର ଲୋକଙ୍କ ସହିତ ମିଶି ସେ ଅନେକ ଅନୁଭୂତି ହାସଲ କରିଛନ୍ତି । ସେ ଏକ ସ୍ୱୟଂ ସମ୍ପୂର୍ଣ୍ଣ ଅନୁଷ୍ଠାନ କହିଲେ ଅତ୍ୟୁକ୍ତି ହେବନାହିଁ ।

ସେ ୧୬-୮-୧୯୮୬ ତାରିଖରେ ଅନୁଷ୍ଠାନଗୁଡ଼ିକର ରକ୍ଷଣାବେକ୍ଷଣ ପାଇଁ ଆର୍ଥିକ ଅନୁଦାନ ବୃଦ୍ଧି କରିବା ପାଇଁ ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ସହିତ ସାକ୍ଷାତ କରି ଅନୁରୋଧ କରିଥିଲେ । ମୁଖ୍ୟମନ୍ତ୍ରୀ ସମସ୍ତ ଅନୁଷ୍ଠାନ ସରକାରଙ୍କ ହାତକୁ ଟେକି ଦେବାକୁ ପରାମର୍ଶ ଦେଇଥିଲେ । ଏତେ ବଡ଼ ଲୋକଶକ୍ତିକୁ ସେ ରାଜଶକ୍ତି ହାତରେ ଅର୍ପଣ କରିବାକୁ କୁଣ୍ଠା ପ୍ରକାଶ କରିଛନ୍ତି । ୧୯୭୭ରୁ ମିଳୁଥିବା ସରକାରୀ ଅନୁଦାନ ବାର୍ଷିକ ଦଶହଜାରରୁ କମି ଛ'ହଜାର ହେଲା । ବହୁ ଅନୁରୋଧ ପରେ ପୁଣି ୧୯୮୮ରୁ ପୂର୍ବଭଳି ଦଶ ହଜାର ଦେବାକୁ କହି, ମାତ୍ର ଥରକ ପାଇଁ ଦେଇ ସରକାର ସ୍ଥଗିତ ରଖିଲେ । ତଥାପି ସେ ଭାଙ୍ଗିପଡ଼ି ନାହାନ୍ତି । ରାଜଶକ୍ତିର ଷଡ଼ଯନ୍ତ୍ରର ଶିକାର ହୋଇ ନଇଁ ଯାଇ ନାହାନ୍ତି । ଓଡ଼ିଶା ସଚିବାଳୟର ଲାଇବ୍ରେରୀ କମିଟି (ବିଧାୟକ ଶ୍ରୀ ତ୍ରିଲୋଚନ କାନୁନ୍‌ଗୋଙ୍କ ଅଧ୍ୟକ୍ଷତାରେ ସର୍ବଶ୍ରୀ ପ୍ରସନ୍ନ ପାଟଶାଣୀ, ଅକ୍ଷୟ ପଟ୍ଟନାୟକ, ଜ୍ୟୋତିଷ ଦାସ, ଅଚ୍ୟୁତାନନ୍ଦ ବିଶ୍ୱାଳ, କୈଳାସ ମଲ୍ଲିକ, ଗଦାଧର ମାଝି, ରାମଚନ୍ଦ୍ର ଖୁଣ୍ଟିଆ, ସୁକୁମାର ନାୟକ ଏବଂ ବିଧାନ ସଭାର ତିନିଜଣ ବରିଷ୍ଠ ଅଫିସରଙ୍କୁ ନେଇ ଗଠିତ) ।

ଉଦୟପୁର ଗସ୍ତ କରି ସବୁ ଅସୁବିଧା ଅନୁଧ୍ୟାନ କରି ୧୨-୧୨-୧୯୮୮ ତାରିଖ ପର୍ଯ୍ୟବେକ୍ଷଣ ଅନୁସାରେ ରିପୋର୍ଟ ମୁଖ୍ୟମନ୍ତ୍ରୀଙ୍କୁ ଦେଲେ । ମାତ୍ର ଫଳ କିଛି ହେଲା ନାହିଁ । ପୁଣି ୧୯୮୯ ଜୁଲାଇ ମାସରେ ଦୃଷ୍ଟି ଆକର୍ଷଣ କରା ଗଲା । ମୁଖ୍ୟମନ୍ତ୍ରୀଙ୍କ ସଚିବ ଶ୍ରୀ ନୀଳମାଧବ ମହାନ୍ତି, ସଂସ୍କୃତି ସଚିବ ସହଦେବ ସାହୁ, ଉପ ସଚିବ ସୁଧାଂଶୁ ମୋହନ ରାଉତରାୟ, ରିସର୍ଚ୍ଚ ଅଫିସର ଦୋଳଗୋବିନ୍ଦ ପଣ୍ଡାଙ୍କୁ ନେଇ ଏକ "ହାଇ କମିଟି" ଉଦୟପୁର ଗସ୍ତ କରି ଯେଉଁ ରିପୋର୍ଟ ଦେଲେ ତାହା ଏକାନ୍ତ ନୈରାଶ୍ୟଜନକ । ସୀମିତ ସମ୍ବଳ ମଧ୍ୟରେ ସରକାର ଅଧିକ ଅନୁଦାନ ଦେବା ସମ୍ଭବ ନୁହେଁ ବୋଲି ହାଇକମିଟିର ରିପୋର୍ଟ ଶୁଣି ବି ଅଜା ହାଏହାଏ କଲେ ନାହିଁ । ପୁନର୍ବାର

ସ୍ଥାନୀୟ ବି.ଡି.ଓ., ତହସିଲ୍‌ଦାରଙ୍କୁ ନେଇ ପରିଚାଳନା କମିଟିର ପୁନର୍ଗଠନ କରାଯିବାକୁ ପରାମର୍ଶ ଆସିଲା । ମାତ୍ର ଏହା ବି ସମ୍ଭବ ହୋଇ ପାରିଲା ନାହିଁ ।

ଏଣୁ ବାଧ ହୋଇ ସଂସ୍କୃତିର ଏକଲବ୍ୟ, ନୀରବ ସାଧକ, ଦକ୍ଷ ସଂଗ୍ରାହକ ଦାସିଆ ଅନ୍ୟ ଭିକ୍ଷୁକ ସାଜିଛନ୍ତି । ସବୁ ସ୍ତରର ଲୋକଙ୍କଠାରୁ ହାତ ପାତି ଭିକ୍ଷା ଗ୍ରହଣ କରୁଛନ୍ତି ।। ସେଠାକୁ ଥରେ ଗଲେ ବାରମ୍ବାର ଯିବାକୁ ମନ ଉଦ୍‌ବୁଦ୍ଧ ହେବ । ସେଇ ପ୍ରଥମ ସାକ୍ଷାତରୁ ହିଁ ସେ ମୋ ପାଇଁ ଚିର ଆରାଧ୍ୟ ଦେବତା ପାଲଟି ଯାଇଛନ୍ତି । ପ୍ରତି ସପ୍ତାହରେ ଅନ୍ତତଃ ତିନିଖଣ୍ଡ ଚିଠି ସେ ମୋ ପାଖକୁ ଲେଖନ୍ତି । ଆଦରରେ ମୋତେ "ଭାଇ" ବୋଲି ଡାକନ୍ତି । ସାଂଗଠନିକ ଦକ୍ଷତା, ସମ୍ପାଦନା ଏବଂ ନବ ପ୍ରତିଭା ବିକାଶ କ୍ଷେତ୍ରରେ ମୋର କାର୍ଯ୍ୟକୁ ପ୍ରଶଂସା କରି ସେ ମୋତେ "କବି ସାରଥୀ" ବୋଲି ସମ୍ବୋଧିତ କରିଛନ୍ତି । ତାହା ମୋ ପାଇଁ ଜ୍ଞାନପୀଠ ଅପେକ୍ଷା ଅଧିକ ମୂଲ୍ୟବାନ ବୋଲି ମୁଁ ଗ୍ରହଣ କରିନେଇଛି । ଜରାବାର୍ଦ୍ଧକ୍ୟର କବଳରେ ଥିବା ଏବେ କିଛିଟା ନିଷ୍କ୍ରିୟ ହୋଇ ପଡ଼ିଛନ୍ତି । ତାଙ୍କର ଚିକିତ୍ସା ଏବଂ ଅନୁଷ୍ଠାନଟିର ସୁବ୍ୟବସ୍ଥା ସକାଶେ ପ୍ରତ୍ୟେକ ଓଡ଼ିଆ ମୁକ୍ତ ହସ୍ତରେ ଦାନ କରିବା ଉଚିତ । ପାରଳାଖେମୁଣ୍ଡିର ମହାମହିମ ଶ୍ରୀଯୁକ୍ତ ଗୋପୀନାଥ ପାତ୍ରୀ, ଡରାଙ୍ଗସାଗରପୁର, ଯାଜପୁରର ଡଃ ଏକାଦଶୀ ପାଢ଼ୀଙ୍କ ଭଳି ସହୃଦୟ, ଗୁଣଗ୍ରାହୀ, ମହାନୁଭବ ପୃଷ୍ଠପୋଷକ ଅଧିକ ସଂଖ୍ୟାରେ ଆଗେଇ ଆସିବା ଉଚିତ । ଅନୁଷ୍ଠାନଟିର ପରିଚାଳନା, ରକ୍ଷଣାବେକ୍ଷଣ ପାଇଁ ସବୁସ୍ତରରୁ ସରକାରଙ୍କୁ ଅନୁରୋଧ କରାଯିବା ଆବଶ୍ୟକ । ପ୍ରତ୍ୟେକ ଓଡ଼ିଆ କବି, ଲେଖକ, ଗବେଷକ ଅନ୍ତତଃ ଥରେ ଉଦୟପୁର ଯାଇ ମୋ କଥାର ସତ୍ୟତା ଉପଲବ୍ଧି କରିବାକୁ ମୋର ବିନମ୍ର ଅନୁରୋଧ ।

---

୬/୪-ରେଳବାଇ କଲୋନୀ,
ପାରାଦ୍ୱୀପ, ଅଠରବାଙ୍କୀ-୭୫୪୧୨୦ ।



ରାଜଧାନୀ ଦିବସ ପାଳନ ଅବସରରେ ସୂଚନା ଭବନଠାରେ ଆୟୋଜିତ ଏକ ପ୍ରଦର୍ଶନୀକୁ ସୂଚନା ଓ ଲୋକ ସମ୍ପର୍କ ବିଭାଗ ନିର୍ଦ୍ଦେଶକ ଶ୍ରୀ ସୁରସେନ ଜେନା ଉଦ୍‌ଘାଟନ କରୁଛନ୍ତି ।

# ସମ୍ବାଦ ପରିକ୍ରମା

## ମହିଳା ବିକାଶ ସମବାୟ ନିଗମର ସମୀକ୍ଷା ବୈଠକ

ଗତ ମାର୍ଚ୍ଚ ୧୫ ତାରିଖ ଦିନ ଭୁବନେଶ୍ୱରଠାରେ ରାଜ୍ୟ ମହିଳା ବିକାଶ ସମବାୟ ନିଗମର ଅଧ୍ୟକ୍ଷ ତଥା ସମାଜକଲ୍ୟାଣ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ପଦ୍ମନାଭ ବେହେରାଙ୍କ ଅଧ୍ୟକ୍ଷତାରେ ମହିଳା ନିଗମର ନିର୍ଦ୍ଦେଶକ ମଣ୍ଡଳୀ ବୈଠକ ଅନୁଷ୍ଠିତ ହୋଇ ୬୬ଟି ମହିଳା ସୋସାଇଟିକୁ ନିଗମର ପରିସରଭୁକ୍ତ କରିବା ପାଇଁ ସ୍ଥିର ହୋଇଛି । ମହିଳାମାନଙ୍କ ସାମୂହିକ ବିକାଶ ନିମନ୍ତେ ନିଗମ ଜରିଆରେ ବିଭିନ୍ନ ଜତୀୟ ନୀତି ପ୍ରଣୟନ କରାଯିବା, ମହିଳା ସୋସାଇଟି ଦ୍ୱାରା ପ୍ରସ୍ତୁତ ହେଉଥିବା ସାମଗ୍ରୀଗୁଡ଼ିକର ନମୁନା ଅଣାଇ ବଜାରରେ ଉକ୍ତ ଜିନିଷଗୁଡ଼ିକର ଅଧିକ ଚାହିଦା ସୃଷ୍ଟି କରିବା, ମହିଳାମାନଙ୍କୁ ସ୍ୱାବଲମ୍ବୀ କରିବା ନିମନ୍ତେ ଆବଶ୍ୟକୀୟ ନୀତି ପ୍ରଣୟନର ଏକ ଚିଠା ପ୍ରସ୍ତୁତ କରିବା ପାଇଁ ବୈଠକରେ ସ୍ଥିର ହୋଇଛି । ପ୍ରଧାନ ମନ୍ତ୍ରୀଙ୍କର ରୋଜଗାର ଯୋଜନାରେ ମହିଳା ଉଦ୍ୟୋଗୀମାନଙ୍କୁ ଅନ୍ତର୍ଭୁକ୍ତ କରାଯାଉଥିବାରୁ ବୋର୍ଡ଼ ପକ୍ଷରୁ ପ୍ରଦତ୍ତ କରାଯିବା ସଙ୍ଗେ ସଙ୍ଗେ ଦରିଦ୍ର ମହିଳା ଉଦ୍ୟୋଗୀଙ୍କୁ ମଧ୍ୟ ବୋର୍ଡ଼ ପକ୍ଷରୁ ଆଂଶିକ ଭାବେ ଆର୍ଥିକ ସହାୟତା ପ୍ରଦାନ କରିବା ପାଇଁ ବୈଠକରେ ସ୍ଥିର ହୋଇଛି । ଏହା ବ୍ୟତୀତ ରାଜ୍ୟରେ ମହିଳାମାନଙ୍କ ନିମନ୍ତେ ଏକ ରିସୋର୍ସ ସେଣ୍ଟର୍ ସ୍ଥାପନ କରାଯାଇ ଅଭିଜ୍ଞ ବ୍ୟକ୍ତିଙ୍କ ତତ୍ତ୍ୱାବଧାନରେ ତାଲିମ କାର୍ଯ୍ୟକ୍ରମମାନ ଆୟୋଜନ କରାଯିବ । ଏହି ତାଲିମ ପାଠ୍ୟକ୍ରମ ପ୍ରସ୍ତୁତ ନିମନ୍ତେ ବିଶିଷ୍ଟ ବ୍ୟକ୍ତିମାନଙ୍କୁ ନେଇ ଏକ ସମ୍ପାଦକୀୟ ମଣ୍ଡଳୀ ଗଠନ କରାଯିବ । ବିକ୍ରୟ ଆଦିର ସହାୟତା ନିମନ୍ତେ ମହିଳା ସୋସାଇଟିଗୁଡ଼ିକଠାରୁ ସେମାନଙ୍କର ଉତ୍ପାଦିତ ବିଭିନ୍ନ ପ୍ରକାର ସାମଗ୍ରୀଗୁଡ଼ିକ ନିଗମ ଜରିଆରେ ସିଧାସଳଖ କ୍ରୟ କରିବା ନିମନ୍ତେ ସରକାରଙ୍କୁ ଅନୁରୋଧ କରାଯାଇଛି ।

ଏହି ବୈଠକରେ ଅନ୍ୟମାନଙ୍କ ମଧ୍ୟରେ ସମ୍ପୃକ୍ତ ସରକାରୀ ଓ ବେସରକାରୀ ବ୍ୟକ୍ତିମାନେ ଯୋଗ ଦେଇଥିଲେ ।

## ଆନ୍ତର୍ଜାତିକ ମହିଳା ଦିବସ ଉପଲକ୍ଷେ କର୍ମଶାଳାରେ ମୁଖ୍ୟମନ୍ତ୍ରୀଙ୍କ ଉଦ୍‌ବୋଧନ

ଗ୍ରାମାଞ୍ଚଳ ମହିଳାମାନଙ୍କ ଦ୍ୱାରା ପ୍ରସ୍ତୁତ ବିଭିନ୍ନ ସାମଗ୍ରୀଗୁଡ଼ିକର ବ୍ୟାପକ ପ୍ରଚାର କରାଯାଇ ପାରିଲେ, ସେଗୁଡ଼ିକ ପ୍ରତିଯୋଗିତାମୂଳକ ବଜାରରେ ଉପଯୁକ୍ତ ସ୍ଥାନ ଅଧିକାର କରିପାରିବ ବୋଲି ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ମତବ୍ୟକ୍ତ କରିଛନ୍ତି ।

ଆନ୍ତର୍ଜାତିକ ମହିଳା ଦିବସ ପାଳନ ଅବସରରେ ସ୍ଥାନୀୟ ମହିଳା ନିଗମ ଆନୁକୂଲ୍ୟରେ ଆୟୋଜିତ ଏକ କର୍ମଶାଳାରେ ଉଦ୍‌ବୋଧନ ଦେଇ ମୁଖ୍ୟମନ୍ତ୍ରୀ କହିଲେ ଯେ ବର୍ତ୍ତମାନ ଯୁଗରେ ପ୍ରଚାର ବା ବିଜ୍ଞାପନ, ବାଣିଜ୍ୟ ବ୍ୟବସାୟ କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଛି । ଗ୍ରାମାଞ୍ଚଳ ମହିଳା ସମବାୟ ସଂସ୍ଥାମାନଙ୍କୁ ପ୍ରୋତ୍ସାହନ ଦେବା ପାଇଁ ମହିଳା ବିକାଶ ସମବାୟ ନିଗମ ସକ୍ରିୟ ଭୂମିକା ଗ୍ରହଣ କରିବା ସଙ୍ଗେ ସଙ୍ଗେ ସେମାନଙ୍କ ଦ୍ୱାରା ପ୍ରସ୍ତୁତ ସାମଗ୍ରୀଗୁଡ଼ିକର ବିକ୍ରୟ ନିମନ୍ତେ ଉପଯୁକ୍ତ ସୁଯୋଗ ସୃଷ୍ଟି କରିବା ପାଇଁ ମୁଖ୍ୟମନ୍ତ୍ରୀ ମହିଳା ନିଗମର କର୍ମକର୍ତ୍ତାମାନଙ୍କୁ ପରାମର୍ଶ ଦେଇଥିଲେ ।

ଏହି କର୍ମଶାଳାରେ ଅନ୍ୟମାନଙ୍କ ମଧ୍ୟରେ ସମାଜ କଲ୍ୟାଣ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ପଦ୍ମନାଭ ବେହେରାଙ୍କ ସମେତ ରାଜ୍ୟସଭା ସଦସ୍ୟା ଶ୍ରୀମତୀ ମୀରା ଦାସ, ରାଜ୍ୟ ସମାଜ ମଙ୍ଗଳ ବୋର୍ଡ଼ର ଅଧ୍ୟକ୍ଷା ଶ୍ରୀମତୀ କସ୍ତୁରିକା ପଟ୍ଟନାୟକ ପ୍ରମୁଖ ଯୋଗ ଦେଇ ଉଦ୍‌ବୋଧନ ଦେଇଥିଲେ । ରାଜ୍ୟ ମହିଳା ବିକାଶ ସମବାୟ ନିଗମର ପରିଚାଳନା ନିର୍ଦ୍ଦେଶିକା ଶ୍ରୀମତୀ ଡି: ସୁବର୍ଣ୍ଣରାଣୀ ଏହି କର୍ମଶାଳାର ଆଭିମୁଖ୍ୟ ସମ୍ପର୍କରେ ସୂଚନା ଦେଇଥିଲେ ।

ଏହି କର୍ମଶାଳାରେ ନିଗମ ସହ ସଂଶ୍ଳିଷ୍ଟ ୬୫ଟି ସୋସାଇଟିର ୩୦୦ ଜଣ ମହିଳା ରାଜ୍ୟର ବିଭିନ୍ନ ସ୍ଥାନରୁ ଆସି ଯୋଗ ଦେଇଥିଲେ । ସୋସାଇଟିଗୁଡ଼ିକର ଆର୍ଥିକ ପରିସ୍ଥିତି ଓ ଆବଶ୍ୟକ ସହାୟତା ସମ୍ପର୍କରେ ଏଥିରେ ଆଲୋଚନା କରାଯାଇଥିଲା । ଏହା ବ୍ୟତୀତ ଅନ୍ୟ ସୋସାଇଟିଗୁଡ଼ିକର କାର୍ଯ୍ୟ କଳାପ ସମ୍ପର୍କରେ ମଧ୍ୟ ଅବଗତ କରାଯାଇଥିଲା ।

## ଭୂମିହୀନଙ୍କୁ ସିଲିଂ ବହିର୍ଭୂତ ଜମି ବଣ୍ଟନ

କୋଡ଼ିଏସୂତ୍ରୀ ଅନ୍ତର୍ଭୁକ୍ତ ଭୂମିହୀନଙ୍କୁ ସିଲିଂ ବହିର୍ଭୂତ ଜମି ବଣ୍ଟନ କାର୍ଯ୍ୟକ୍ରମରେ ଚଳିତ ଆର୍ଥିକ ବର୍ଷରେ ୨,୬୯୦ ଏକର ସିଲିଂ ବହିର୍ଭୂତ ଜମି ବଣ୍ଟନ କରାଯିବା ପାଇଁ ଲକ୍ଷ୍ୟ ଧାର୍ଯ୍ୟ ହୋଇଥିବା ସ୍ଥଳେ ଗତ ଫେବୃଆରୀ ମାସ ଶେଷ ସୁଦ୍ଧା, ଅର୍ଥାତ୍ ୧୧ ମାସ ମଧ୍ୟରେ ୨,୨୯୦.୨୮୪ ଏକର ଜମି ଭୂମିହୀନଙ୍କ ମଧ୍ୟରେ ବଣ୍ଟନ କରାଯାଇ ଧାର୍ଯ୍ୟ ଲକ୍ଷ୍ୟର ଶତକଡ଼ା ୮୫.୧୪ ଭାଗ ସଫଳତା ହାସଲ କରାଯାଇ ପାରିଛି ।

ଏହି କାର୍ଯ୍ୟକ୍ରମରେ କେବଳ ଗତ ଫେବୃଆରୀ ମାସରେ ବଣ୍ଟନ କରାଯାଇଥିବା ୪୯୮.୯୮୦ ଏକର ସିଲିଂ ବହିର୍ଭୂତ ଜମି ତନ୍ମଧ୍ୟରେ ଅନ୍ତର୍ଭୁକ୍ତ ବୋଲି ଯୋଜନା ଓ ସମନ୍ୱୟ ବିଭାଗ ସୂତ୍ରରୁ ଜଣାଯାଇଛି ।

## ଦେଶର ଉତ୍ଥାନରେ ନାରୀ ଶିକ୍ଷା ଅନିବାର୍ଯ୍ୟ

ରେଭେନ୍‌ସା ମହାବିଦ୍ୟାଳୟ ଛାତ୍ରୀ ନିବାସର ୩୩ତମ ବାର୍ଷିକ ଉତ୍ସବ ପାଳନ ଅବସରରେ ରାଜ୍ୟପାଳ ଶ୍ରୀ ବି: ସତ୍ୟନାରାୟଣ ରେଡ୍ଡୀ ମୁଖ୍ୟ ଅତିଥି ଭାବେ ଯୋଗ ଦେଇ ବିଭିନ୍ନ ପ୍ରତିଯୋଗିତାରେ କୃତୀ ଛାତ୍ରୀମାନଙ୍କୁ ପୁରସ୍କୃତ କରି କହିଲେ ଯେ, ସମାଜ ତଥା ଦେଶର ଉତ୍‌ଥାନରେ ନାରୀଶିକ୍ଷା ଅତ୍ୟନ୍ତ ଆବଶ୍ୟକ । ନାରୀ ଉନ୍ନତି ବିନା ଦେଶର ଉନ୍ନତି ଅସମ୍ଭବ । ପରିବାରରେ ନାରୀ ପିଲାମାନଙ୍କର ପ୍ରଥମ ଶିକ୍ଷକ । ରେଭେନ୍‌ସା ମହାବିଦ୍ୟାଳୟ ଦୀର୍ଘଦିନ ଧରି ନାରୀ ଶିକ୍ଷା କ୍ଷେତ୍ରରେ ଏକ ଅଗ୍ରଣୀ ଅନୁଷ୍ଠାନ ରୂପେ କାର୍ଯ୍ୟ କରି ଆସିଛି । ନାରୀମାନଙ୍କୁ ଉଚିତ ଶିକ୍ଷା ସମାନତା ଓ ଉଚିତ ନ୍ୟାୟ ପ୍ରଦାନକରି ପାରିଲେ ଦେଶର ଉନ୍ନତି ହୋଇପାରିବ ଏଥିରେ ସନ୍ଦେହର ଅବକାଶ ନାହିଁ । ସ୍ୱାଧୀନତା ଆନ୍ଦୋଳନରେ ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ଦେଶର ସ୍ୱାଧୀନତା ପାଇଁ ନାରୀମାନେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ ବୋଲି ରାଜ୍ୟପାଳ ଶ୍ରୀ ରେଡ୍ଡୀ ପ୍ରକାଶ କରିଥିଲେ ।

ତେଣୁ ନାରୀମାନଙ୍କୁ ସମାଜରେ ସମାନ ସ୍ଥାନ ପାଇବାକୁ ହେଲେ ନାରୀଶିକ୍ଷାକୁ ଗୁରୁତ୍ୱ ଦିଆଯିବା ଆବଶ୍ୟକ । ସେମାନଙ୍କ ସ୍ଥାନ ଯେ କେବଳ ପରିବାର ମଧ୍ୟରେ ଆବଦ୍ଧ ତା ନୁହେଁ ସେମାନଙ୍କର ମଧ୍ୟ ପୁରୁଷମାନଙ୍କ ଭଳି ସମାଜରେ ସମାନ ଅଧିକାର ରହିଛି । ତେଣୁ ଆଧୁନିକ ଶିକ୍ଷିତା ନାରୀମାନେ ସେମାନଙ୍କର କର୍ତ୍ତବ୍ୟ ବିଷୟରେ ସଚେତନ ହେବା ସଙ୍ଗେ ସଙ୍ଗେ ସମାଜ ଓ ଦେଶକୁ ଦିଗ୍‌ଦର୍ଶନ ଦେଇ ସମୃଦ୍ଧ କରିବାକୁ ଉପସ୍ଥିତ ନାରୀମାନଙ୍କୁ ରାଜ୍ୟପାଳ ଆହ୍ୱାନ ଦେଇଥିଲେ ।

ରେଭେନ୍‌ସା ମହାବିଦ୍ୟାଳୟ ରାଜ୍ୟର ଅନ୍ୟ ମହାବିଦ୍ୟାଳୟମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ଏବଂ ଛାତ୍ରୀମାନଙ୍କର ଶୃଙ୍ଖଳିତ ମନୋଭାବ ଏବଂ କର୍ତ୍ତବ୍ୟ ନିଷ୍ଠା ମହାବିଦ୍ୟାଳୟକୁ ଯେତିକି ପ୍ରତିଷ୍ଠା ଆଣିଦେଇଛି ତାହା ଆଗାମୀ ଦିନମାନଙ୍କରେ ଛାତ୍ରୀମାନଙ୍କର ଦୃଢ଼ ମନୋବଳ ଓ କର୍ତ୍ତବ୍ୟ ପରାୟଣ ବଳରେ ଦ୍ୱିଗୁଣିତ ହେବ ବୋଲି ରାଜ୍ୟପାଳ ଶ୍ରୀ ରେଡ୍ଡୀ ଆଶା ପ୍ରକାଶ କରିଥିଲେ ।

## ଶିଶୁ ଶ୍ରେଣୀ ଖୋଲିବା ନିମନ୍ତେ ସ୍କୁଲ ଓ ଗଣଶିକ୍ଷା ମନ୍ତ୍ରୀ ଆହ୍ୱାନ

ଛୋଟ ଛୋଟ ପିଲାଙ୍କୁ ପ୍ରଥମରୁ ସ୍କୁଲ ଓ ପାଠ ପ୍ରତି ଆଗ୍ରହୀ କରାଇବା ଉଦ୍ଦେଶ୍ୟରେ ପ୍ରତି ଗାଆଁ ସ୍କୁଲରେ ଶିଶୁ ଶ୍ରେଣୀ ଖୋଲିବା ନିମନ୍ତେ ସ୍କୁଲ ଓ ଗଣଶିକ୍ଷା ମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘଡ଼େଇ ଜନସାଧାରଣଙ୍କୁ ଆହ୍ୱାନ ଦେଇଛନ୍ତି । ଶ୍ରୀ ଘଡ଼େଇ କହିଛନ୍ତି :–

"ଶିକ୍ଷା ପ୍ରତ୍ୟେକ ଶିଶୁର ଜନ୍ମଗତ ଅଧିକାର । ସମସ୍ତଙ୍କୁ ଉପଯୁକ୍ତ ଶିକ୍ଷା ସୁବିଧା ଯୋଗାଇ ଦେବା ପାଇଁ ଆମ ସମ୍ବିଧାନରେ ନିର୍ଦ୍ଦେଶ ରହିଛି । ଆମ ସରକାର ସମସ୍ତଙ୍କୁ ଶିକ୍ଷା ଯୋଗାଇ ଦେବା ପାଇଁ ନାନା ପ୍ରକାର ପଦକ୍ଷେପ ନେଉଛନ୍ତି । ଆମ ରାଜ୍ୟରେ ପ୍ରାଥମିକ ବିଦ୍ୟାଳୟ ସଂଖ୍ୟା ୪୧ ହାଜାରରୁ ଅଧିକ । ୩୮ ଲକ୍ଷରୁ ଅଧିକ ପିଲା ଏହି ସ୍କୁଲମାନଙ୍କରେ ପଢ଼ୁଛନ୍ତି । କିନ୍ତୁ ଏ... ଚେଷ୍ଟା ସତ୍ତ୍ୱେ, ଆହୁରି ନଅ ଲକ୍ଷ ପିଲା ସ୍କୁଲକୁ ଯାଇ ନାହାନ୍ତି । ଆମ ସମସ୍ତଙ୍କର ଦାୟିତ୍ୱ ହେଉଛି, ଏହି ପିଲାମାନଙ୍କୁ ସ୍କୁଲକୁ ଆଣିବାକୁ ହେବ, ଶିକ୍ଷା ପାଇବାର ସୁଯୋଗ ସେମାନଙ୍କୁ ଦେବାକୁ ହେବ । ଏହା କିପରି କରାଯାଇ ପାରିବ ?

ଏହି ପିଲାମାନେ ସ୍କୁଲକୁ ନ ଯିବାର କାରଣଗୁଡ଼ିକ ମଧ୍ୟରୁ ପ୍ରଧାନ କାରଣ ହେଲା :– ଶିକ୍ଷା ପ୍ରତି ଏମାନଙ୍କର ଆଗ୍ରହର ଅଭାବ । ଏମାନଙ୍କ ମନରେ ସ୍କୁଲ ପ୍ରତି ଆକର୍ଷଣ ସୃଷ୍ଟି କରିପାରିଲେ, ଏମାନଙ୍କୁ ସ୍କୁଲକୁ ନେଇ ପାଠ ପଢ଼େଇବା ଆ... ପକ୍ଷରେ ସମ୍ଭବ ହୋଇପାରିବ । ଏଇ ଆଗ୍ରହ ସୃଷ୍ଟି କରିବା ଓ... ଶିଶୁକୁ ବିଦ୍ୟାଳୟକୁ ମନେଇବା ପାଇଁ ଶିଶୁ ଶ୍ରେଣୀର ଆବଶ୍ୟକତା ଅଛି । ଆମ ଗାଁ ସ୍କୁଲରେ ଆଗେ ଶିଶୁ ଶ୍ରେଣୀ ଥିଲା । ଶିଶୁ ଶ୍ରେଣୀରେ ପଢ଼ିବା ଓ ପାଠ ପ୍ରତି ଆଗ୍ରହୀ ହେବା ଆମ ସମସ୍ତଙ୍କ ଅଙ୍ଗେ ନିଭେଇବା ଅନୁଭୂତି । ପୁଣି ଏହି ଅନୁଭୂତିର ପ୍ରଭାବ ବହୁତ ବେଶୀ ।

"ମାତ୍ର ଏବେ ଆମ ସ୍କୁଲରେ ଶିଶୁ ଶ୍ରେଣୀର ବ୍ୟବସ୍ଥା ନାହିଁ । "ସମସ୍ତଙ୍କ ପାଇଁ ଶିକ୍ଷା" ଓ "ସାର୍ବଜନୀନ ପ୍ରାଥମିକ ଶିକ୍ଷା" ଲକ୍ଷ୍ୟ ହାସଲ ପାଇଁ ଶିଶୁ ଶ୍ରେଣୀର ଆବଶ୍ୟକତା ଅପରିହାର୍ଯ୍ୟ । ଆମ ପାଇଁ ବଡ଼ ସମସ୍ୟା ହେଲା ସମ୍ବଳର ଅଭାବ । ମନ ଓ ଆନ୍ତରିକତା ଥିଲେ, ସମ୍ବଳ ଆମ ପାଇଁ ସମସ୍ୟା ହୋଇ ରହିବ ନାହିଁ । ଛୋଟ ଛୋଟ ଶିଶୁଙ୍କୁ ଆଦର ଓ ସ୍ନେହ ଦେଇ, ପାଠ ପଢ଼େଇ ମଣିଷ କରିବାର ତୃପ୍ତି ଆଉ କେଉଁଥିରେ ନାହିଁ ।

"ଆସନ୍ତୁ, ଆମେ ସମସ୍ତେ ସଂକଳ୍ପ ନେବା, ଆମର ପ୍ରତି ଗାଁ ସ୍କୁଲରେ ଶିଶୁ ଶ୍ରେଣୀ ଖୋଲିବା । ସରକାରୀ ଅନୁଦାନରେ ନୁହେଁ, ଆମ ନିଜ ପ୍ରଚେଷ୍ଟାରେ । କୁନି କୁନି ପିଲାଙ୍କୁ ଆଣି ଖେଳ ଖୁସି, ନାଚ ଗୀତ, ସ୍ନେହ ମମତାର ବାତାବରଣ ଭିତରେ ସେମାନଙ୍କୁ ସ୍କୁଲ ଓ ପାଠ ପ୍ରତି ଆଗ୍ରହୀ କରାଇବା ।"

"ଏଣୁ ମୋର ଆପଣଙ୍କୁ ବିନମ୍ର ନିବେଦନ, ପ୍ରତି ଗାଁରେ ଆପଣମାନେ ଶିଶୁ ଶ୍ରେଣୀ ଖୋଲିବା ପାଇଁ ପ୍ରଚେଷ୍ଟା କରନ୍ତୁ । ସମସ୍ତଙ୍କ ସହଯୋଗକୁ ଭିତ୍ତି କରି ଶିଶୁ ଶ୍ରେଣୀ ଗଢ଼ିଉଠୁ । ଶିକ୍ଷା କ୍ଷେତ୍ରରେ ଅଭିନବ ଯୁଗ ସୃଷ୍ଟି ହେଉ । ଏହା ମୋର ଆନ୍ତରିକ କାମନା ।

## ଉପଯୁକ୍ତ ପ୍ରଶିକ୍ଷଣ ପ୍ରଦାନ ଦ୍ୱାରା ମହିଳାମାନେ ଅର୍ଥନୈତିକ କ୍ଷେତ୍ରରେ ସ୍ୱାବଲମ୍ବୀ ହୋଇପାରିବେ

ମହିଳା ଉଦ୍ୟୋଗୀମାନଙ୍କୁ ଉପଯୁକ୍ତ ପ୍ରଶିକ୍ଷଣ ପ୍ରଦାନ କରାଯାଇ ପାରିଲେ, ସେମାନେ ବ୍ୟବସାୟ କ୍ଷେତ୍ରରେ ନିଜକୁ ସୁପ୍ରତିଷ୍ଠିତ କରିବା ସଙ୍ଗେ ସଙ୍ଗେ ଅର୍ଥନୈତିକ ଦୃଷ୍ଟିକୋଣରୁ ସ୍ୱାବଲମ୍ବୀ ହୋଇପାରିବେ ବୋଲି ହସ୍ତତନ୍ତ ଓ କୁଟୀର ଶିଳ୍ପ ବିଭାଗ ଶାସନ ସଚିବ ଶ୍ରୀ ଭାସ୍କର ଚନ୍ଦ୍ର ଷଡ଼ଙ୍ଗୀ ପ୍ରକାଶ କରିଛନ୍ତି ।

ରାଜ୍ୟ ମହିଳା ବିକାଶ ସମବାୟ ନିଗମ ଓ ଅହମଦାବାଦସ୍ଥିତ ଭାରତୀୟ ଉଦ୍ୟୋଗ ଉନ୍ନୟନ ପ୍ରତିଷ୍ଠାନର ମିଳିତ ଆନୁକୂଲ୍ୟରେ

ଭୁବନେଶ୍ୱର ସ୍ଥିତ କୃଷି ସମବାୟ ତାଲିମ ପ୍ରତିଷ୍ଠାନରେ ଚଳିତ ମାସ ୯ ତାରିଖଠାରୁ ଅନୁଷ୍ଠିତ ବ୍ୟବସାୟ ତଥା ଶିଳ୍ପ କ୍ଷେତ୍ରରେ କାର୍ଯ୍ୟ କରୁଥିବା ଉଦ୍ଦେଶ୍ୟରେ ମହିଳା ଉଦ୍ୟୋଗୀମାନଙ୍କର ଏକ ପ୍ରଶିକ୍ଷଣ ଶିବିରର ଉଦ୍‌ଯାପନୀ ଉତ୍ସବରେ ଗତ ୨୬ ତାରିଖ ଦିନ ମୁଖ୍ୟ ଅତିଥି ଭାବେ ଯୋଗ ଦେଇ ଶ୍ରୀ ଷଡଙ୍ଗୀ ମହିଳାମାନଙ୍କୁ ବିଭିନ୍ନ କ୍ଷେତ୍ରରେ ଉପଯୁକ୍ତ ତାଲିମ ପ୍ରଦାନ କରାଯାଇ ପାରିଲେ, ସେମାନେ ଆତ୍ମନିର୍ଭରଶୀଳ ହୋଇପାରିବେ ବୋଲି ପ୍ରକାଶ କରିଥିଲେ । ମହିଳା ବିକାଶ ସମବାୟ ନିଗମ ଦ୍ୱାରା ଆୟୋଜିତ ଏହି ସର୍ବପ୍ରଥମ ମହିଳା ଉଦ୍ୟୋଗୀ ତାଲିମ ଶିବିର ଏକ ବଳିଷ୍ଠ ପଦକ୍ଷେପ ବୋଲି ସେ ମତବ୍ୟକ୍ତ କରିଥିଲେ ।

ଭାରତୀୟ କ୍ଷୁଦ୍ର ଶିଳ୍ପ ଉନ୍ନୟନ ବ୍ୟାଙ୍କ୍ ସହାୟତାରେ ଅହମ୍ମଦାବାଦ ସ୍ଥିତ ଭାରତୀୟ ଉଦ୍ୟୋଗ ଉନ୍ନୟନ ପ୍ରତିଷ୍ଠାନରେ ଡିଗ୍ରୀ ହାସଲ କରିଥିବା ଶ୍ରୀମତୀ ନଳିନୀ କଂଟ୍ରାକ୍ଟରଙ୍କ ପରିଚାଳନାରେ ଆୟୋଜିତ ଏହି ପ୍ରଶିକ୍ଷଣ ଶିବିରର ଉଦ୍‌ଯାପନୀ ଉତ୍ସବରେ ଷ୍ଟେଟ ବ୍ୟାଙ୍କର ଆଞ୍ଚଳିକ ପରିଚାଳକ ଶ୍ରୀ ବି. ବି. ଶର୍ମା ସମ୍ମାନିତ ଅତିଥି ଭାବେ ଯୋଗଦେଇ ଉଦ୍‌ବୋଧନ ଦେଇଥିଲେ ଏବଂ ମହିଳା ନିଗମର ପରିଚାଳନା ନିର୍ଦ୍ଦେଶିକା ଶ୍ରୀମତୀ ଜି. ସୁବର୍ଣ୍ଣରାଣୀ ସ୍ୱାଗତ ଭାଷଣ ଦେଇ ପ୍ରଶିକ୍ଷଣ କାର୍ଯ୍ୟକ୍ରମ ସମ୍ପର୍କରେ ସୂଚନା ଦେଇଥିଲେ ।

ମହିଳା ଉଦ୍ୟୋଗୀମାନଙ୍କୁ ଉଦ୍ୟୋଗ କ୍ଷେତ୍ରରେ ଦକ୍ଷ କରିବା ଏହି କାର୍ଯ୍ୟକ୍ରମର ମୁଖ୍ୟ ଉଦ୍ଦେଶ୍ୟ । ବିଶେଷ କରି ବ୍ୟବସାୟ କ୍ଷେତ୍ରରେ ଥିବା ୭ଟି ଏବଂ ଦକ୍ଷତା କ୍ଷେତ୍ରରେ ଥିବା ୧୩ଟି ବିଭିନ୍ନ ଦୈନିକ ସମସ୍ୟା ଉପରେ ଏଥିରେ ପୁଙ୍ଖାନୁପୁଙ୍ଖ ଭାବେ ଆଲୋଚନା କରାଯିବା ସହ ଦୃଶ୍ୟ–ଶ୍ରାବ୍ୟ ଜରିଆରେ ମଧ୍ୟ ବିଶଦ ଭାବେ ବ୍ୟାଖ୍ୟା କରାଯାଇଥିଲା । ବାର୍ଷିକ ଏକ ଲକ୍ଷ ଟଙ୍କାରୁ ୨ କୋଟି ଟଙ୍କା ମଧ୍ୟରେ କାରବାର କରୁଥିବା ୨୫ ଜଣ ମହିଳା ଉଦ୍ୟୋଗୀ ଏହି ପ୍ରଶିକ୍ଷଣ ଶିବିରରେ ଅଂଶ ଗ୍ରହଣ କରିଥିଲେ । ଏହି କାର୍ଯ୍ୟକ୍ରମ ଦ୍ୱାରା ସେମାନେ ଉପକୃତ ହୋଇଥିବା ଦର୍ଶାଇ ଏହି କାର୍ଯ୍ୟକ୍ରମର ଉଦ୍ୟୋକ୍ତାମାନଙ୍କୁ କୃତଜ୍ଞତା ଜଣାଇଥିଲେ ।

## ବାରକୋଟଠାରେ ଗ୍ରାମ୍ୟସ୍ତରୀୟ ପ୍ରଦର୍ଶନୀ

ବାରକୋଟ ସମନ୍ୱିତ ବିକାଶ ଯୋଜନା ଆନୁକୂଲ୍ୟରେ ଆୟୋଜିତ ଏକ ଗ୍ରାମ୍ୟସ୍ତରୀୟ ପ୍ରଦର୍ଶନୀକୁ ଦେଓଗଡ଼ ଜିଲ୍ଲାପାଳ ଶ୍ରୀ ପ୍ରଫୁଲ୍ଲ କୁମାର ମହାନ୍ତି ମାର୍ଚ୍ଚ ୨୦ ତାରିଖ ଦିନ ଆନୁଷ୍ଠାନିକ ଭାବେ ଉଦ୍‌ଘାଟନ କରି ଗ୍ରାମାଞ୍ଚଳରେ କାର୍ଯ୍ୟକାରୀ ହେଉଥିବା ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟକ୍ରମର ସଫଳ ରୂପାୟନ ନିମନ୍ତେ ଜନ ସହଯୋଗ କାମନା କରିଥିଲେ । ଗ୍ରାମାଞ୍ଚଳର ଦ୍ରୁତ ଅଗ୍ରଗତି ପାଇଁ ନିଆଯାଇଥିବା ବିଭିନ୍ନ ଗଠନମୂଳକ ପଦକ୍ଷେପ ସମ୍ପର୍କରେ ଜନସାଧାରଣଙ୍କୁ ଅବଗତ କରାଇ କୃଷି କାର୍ଯ୍ୟରେ ଅଭିବୃଦ୍ଧି ଉପରେ ସେ ଗୁରୁତ୍ୱ ଆରୋପ କରିବା ସଙ୍ଗେ ସଙ୍ଗେ ଏହି ପ୍ରଦର୍ଶନୀର ଆବଶ୍ୟକତା ସମ୍ପର୍କରେ ବୁଝାଇଥିଲେ ।

ଉକ୍ତ ଜିଲ୍ଲାପାଳଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଏହି ଉଦ୍‌ଘାଟନୀ ଉତ୍ସବରେ ଏସ୍. ଡି. ଓ. ଶ୍ରୀ ରବୀନ୍ଦ୍ରନାଥ ପାଢ଼ୀ ସମ୍ମାନିତ ଅତିଥି ଭାବେ ଯୋଗଦେଇ ସରକାରଙ୍କର ବିଭିନ୍ନ ଗଠନମୂଳକ ଯୋଜନା ସମ୍ପର୍କରେ ସୂଚନା ଦେବା ସଙ୍ଗେ ସଙ୍ଗେ ଶିକ୍ଷାର ବିକାଶ ଉପରେ ଗୁରୁତ୍ୱ ଆରୋପ କରିଥିଲେ । ପ୍ରାରମ୍ଭରେ ଶିଶୁ ବିକାଶ ଯୋଜନା ବିକାଶ ପ୍ରକଳ୍ପ ଅଧିକାରୀ ଶ୍ରୀମତୀ ଗୀତାଞ୍ଜଳି ମହାନ୍ତି ଶିଶୁ ବିକାଶ ପ୍ରକଳ୍ପର ବିବରଣୀ ପଠନ କରିଥିଲେ । ଏହି ଅବସରରେ ବିଭିନ୍ନ ପ୍ରତିଯୋଗିତାରେ କୃତକାର୍ଯ୍ୟ ହୋଇଥିବା ଶିଶୁମାନଙ୍କୁ ଜିଲ୍ଲାପାଳ ଶ୍ରୀ ମହାନ୍ତି ପୁରସ୍କାର ବିତରଣ କରିଥିଲେ ।

ଶେଷରେ ଅଙ୍ଗନବାଡ଼ି କେନ୍ଦ୍ରଗୁଡ଼ିକର ଶିଶୁ କଳାକାରମାନଙ୍କ ଦ୍ୱାରା ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷଣ କରାଯାଇଥିଲା ।

## ବିଶିଷ୍ଟ ସାମାଜିକ ଚିନ୍ତା ନାୟକ ସ୍ୱର୍ଗତଃ ଡକ୍ଟର ରାମ ମନୋହର ଲୋହିଆଙ୍କ ୮୪ତମ ଜନ୍ମ ଜୟନ୍ତୀ ଉତ୍ସବ ୧୯୯୪

ସମ୍ପ୍ରତି ବିଶିଷ୍ଟ ସମାଜବାଦୀ ଚିନ୍ତା ନାୟକ ସ୍ୱର୍ଗତଃ ଡକ୍ଟର ରାମ ମନୋହର ଲୋହିଆଙ୍କ ୮୪ତମ ଜୟନ୍ତୀ ଉତ୍ସବ ସ୍ଥାନୀୟ ସୂଚନା ଭବନଠାରେ ମହାସମାରୋହରେ ପାଳିତ ହୋଇଯାଇଛି । ମାନ୍ୟବର ବାଚସ୍ପତି ଶ୍ରୀ ଯୁଧିଷ୍ଠିର ଦାସଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ସଭାରେ ମୁଖ୍ୟ ଅତିଥି ଭାବେ ଯୋଗଦେଇ ଓଡ଼ିଶାର ମାନ୍ୟବର ରାଜ୍ୟପାଳ ଶ୍ରୀ ବି. ସତ୍ୟନାରାୟଣ ରେଡ୍ଡୀ ସ୍ୱର୍ଗତଃ ଲୋହିଆଙ୍କ ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରି କହିଲେ ଯେ ରାମ ମନୋହର ଲୋହିଆ ଦେଶର ଗରିବ ଓ ଦଳିତ ଲୋକମାନଙ୍କର ଉତ୍‌ଥାନ ପାଇଁ ସର୍ବଦା ଚେଷ୍ଟିତ ଥିଲେ । ସ୍ୱାଧୀନତା ପରେ ଭାରତୀୟ ଭାଷାର ପ୍ରୟୋଗ ପାଇଁ ସେ ନିଜକୁ ଉତ୍ସର୍ଗ କରିଥିଲେ । ଡକ୍ଟର ଲୋହିଆଙ୍କ ଭାଷାରେ ଦେଶର ଶତକଡ଼ା ୬୦ ଭାଗ ଦଳିତ ଓ ନିଷ୍ପେଷିତ ଲୋକମାନଙ୍କର ଯେ ପର୍ଯ୍ୟନ୍ତ ଉନ୍ନତି ନ ହୋଇଛି, ସେପର୍ଯ୍ୟନ୍ତ ଦେଶ ର ଉନ୍ନତି ଅସମ୍ଭବ । ସେ ଏପରି ସମାଜ ଗଢ଼ିବାକୁ ଚାହୁଁଥିଲେ, ଯେଉଁଥିରେ କି ଗରିବ, ବେକାରୀ, ଶୋଷଣ ନଥିବ ଏବଂ ଶାନ୍ତି ସମତା ଓ ସଦ୍‌ଭାବ ପରିଲକ୍ଷିତ ହେଉଥିବ । ଆଜିର ଏ ପବିତ୍ର ଦିବସରେ ଡକ୍ଟର ଲୋହିଆଙ୍କର ବିଚାରଧାରା ଓ ଆଦର୍ଶରେ ଅନୁପ୍ରାଣିତ ହୋଇ ଦେଶର ଅଗ୍ରଗତି କରିବାକୁ ଆଜିର ଯୁବସମାଜ ଆଗେଇ ଆସିବା ପାଇଁ ରାଜ୍ୟପାଳ ଶ୍ରୀ ରେଡ୍ଡୀ ଆହ୍ୱାନ ଦେଇଥିଲେ ।

ଉକ୍ତ ଉତ୍ସବରେ ଅନ୍ୟମାନଙ୍କ ମଧ୍ୟରେ ପୂର୍ବତନ ବିଧାୟକ ବ୍ରଜ କିଶୋର ମହାନ୍ତି, ବିଧାୟକ ନଗେନ୍ଦ୍ର କୁମାର ପ୍ରଧାନ, ଶରତ କୁମାର କର, ଅମର ଶତପଥୀ, ରାଧାକାନ୍ତ ସେଠୀ, ପତିତପାବନ ପ୍ରଧାନ, ଅଜୟ କୁମାର ଜେନା, ବୃନ୍ଦାବନ ମାଝୀ, ରଘୁନାଥ ମହାନ୍ତି, ମାନ୍ୟବର ମନ୍ତ୍ରୀ ପ୍ରସନ୍ନ କୁମାର ପାଟଶାଣୀ, ଅଦ୍ୱୈତ ପ୍ରସାଦ ସିଂହ, ପୂର୍ବତନ ମଣିପୁର ରାଜ୍ୟପାଳ ଶ୍ରୀ ଚିନ୍ତାମଣି ପାଣିଗ୍ରାହୀ ପ୍ରମୁଖ ସ୍ୱର୍ଗତଃ ଆତ୍ମା ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରି ସ୍ୱର୍ଗତଃ ଲୋହିଆଙ୍କୁ ଜଣେ ଜନନାୟକ, ଆଦର୍ଶ ପୁରୁଷ, ଜଣେ ଚିନ୍ତାନାୟକ, ଜଣେ ଶ୍ରେଷ୍ଠ ବ୍ୟକ୍ତିତ୍ୱ ମୌଳିକ ଚିନ୍ତକ, ଅର୍ଥନୈତିକ ବିଶାରଦ ଓ ଜଣେ ସମାଜବାଦୀ ନେତା ରୂପେ ବର୍ଣ୍ଣନା କରିଥିଲେ ।

## ରାଜ୍ୟରେ ପରିବାର ନିୟୋଜନ କାର୍ଯ୍ୟକ୍ରମ

ରାଜ୍ୟରେ ଦେଖାଦେଇଥିବା ଜନ ବିସ୍ଫୋରଣକୁ ନିୟନ୍ତ୍ରଣ କରିବା ପାଇଁ ସରକାରଙ୍କ ତରଫରୁ ବ୍ୟାପକ ପଦକ୍ଷେପ

ନିଆଯାଇଛି । ତଦନୁଯାୟୀ ଚଳିତ ଆର୍ଥିକ ବର୍ଷରେ ଏକ ଲକ୍ଷ ୪୪ ହଜାର ବ୍ୟକ୍ତିଙ୍କର ପରିବାର କଲ୍ୟାଣ ଅସ୍ତ୍ରୋପଚାର କରିବା ପାଇଁ ଲକ୍ଷ୍ୟ ଧାର୍ଯ୍ୟ ହୋଇଥିବା ସ୍ଥଳେ ଗତ ଫେବ୍ରୁଆରୀ ମାସ ଶେଷ ସୁଦ୍ଧା ଏକ ଲକ୍ଷ ୯୮ ହଜାର ୭୨୭ ଜଣଙ୍କର ଅସ୍ତ୍ରୋପଚାର କରାଯାଇ ଧାର୍ଯ୍ୟ ଲକ୍ଷ୍ୟର ଶତକଡ଼ା ୮୨.୫୦ ଭାଗ ସଫଳତା ହାସଲ କରାଯାଇ ପାରିଛି । ଗତ ଫେବ୍ରୁଆରୀ ମାସରେ ୯୮,୬୦୮ ଜଣଙ୍କର ପରିବାର କଲ୍ୟାଣ ଅସ୍ତ୍ରୋପଚାର କରାଯାଇଛି ବୋଲି କିଂଶସୂତ୍ରୀ କାର୍ଯ୍ୟକ୍ରମ ଅଗ୍ରଗତି ବିବରଣୀରୁ ପ୍ରକାଶ ।

## ରାଜ୍ୟରେ ସାର୍ବଜନୀନ ଟିକାଦାନ କାର୍ଯ୍ୟକ୍ରମ

ରାଜ୍ୟରେ କାର୍ଯ୍ୟକାରୀ ହେଉଥିବା ସାର୍ବଜନୀନ ଟିକା ଦାନ କାର୍ଯ୍ୟକ୍ରମରେ ଚଳିତ ଆର୍ଥିକ ବର୍ଷର ଫେବ୍ରୁଆରୀ ମାସ ଶେଷ ସୁଦ୍ଧା ୧୧ ମାସ ମଧ୍ୟରେ ୬୬୭.୯୬୪ ହଜାର ଶିଶୁଙ୍କୁ ଡି.ପି.ଟି., ୬୬୯.୫୧୧ ହଜାର ଶିଶୁଙ୍କୁ ପୋଲିଓ ୭୮୨.୭୦୫ ହଜାର ଶିଶୁଙ୍କୁ ବି.ସି.ଜି. ପ୍ରତିଷେଧକ ଟିକା ଦିଆଯାଇଛି । ଗତ ଫେବ୍ରୁଆରୀ ମାସରେ ୮୯.୫୪୮ ହଜାର ଶିଶୁଙ୍କୁ ଡି.ପି.ଟି., ୯୦.୦୯୩ ହଜାର ଶିଶୁଙ୍କୁ ପୋଲିଓ ଓ ୮୬.୨୮୮ ହଜାର ଶିଶୁଙ୍କୁ ବି.ସି.ଜି. ପ୍ରତିଷେଧକ ଟିକା ଦିଆଯାଇଛି ବୋଲି ଯୋଜନା ଓ ସମବାୟ ବିଭାଗ କିଂଶସୂତ୍ରୀ କାର୍ଯ୍ୟକ୍ରମ ଅଗ୍ରଗତି ବିବରଣୀରୁ ଜଣାଯାଉଛି ।

## ରାଧାମାଧବଙ୍କ ବିଗ୍ରହ ପ୍ରତିଷ୍ଠା

ସମ୍ପ୍ରତି ଶୈଳଶ୍ରୀ ବିହାର, ଚନ୍ଦ୍ରଶେଖରପୁର ପର୍ଯ୍ୟାୟ-୭ ରେ ଶ୍ରୀଶ୍ରୀରାଧା ମାଧବ ଦେବ ଓ ଶ୍ରୀଶ୍ରୀନୀଳକଣ୍ଠେଶ୍ୱର ଦେବଙ୍କ ମନ୍ଦିର ଓ ବିଗ୍ରହ ପ୍ରତିଷ୍ଠା ଉତ୍ସବ ଅନୁଷ୍ଠିତ ହୋଇ ଯାଇଛି । ଏଥିରେ ମୁଖ୍ୟ ଅତିଥି ଭାବେ ଯୋଗ ଦେଇ ଓଡ଼ିଶାର ମାନ୍ୟବର ରାଜ୍ୟପାଳ ଶ୍ରୀ ବି. ସତ୍ୟନାରାୟଣ ରେଡ୍ଡୀ କହିଲେ ଯେ ଭାରତୀୟ ଦର୍ଶନରେ ଧର୍ମ, କର୍ମ, ଅର୍ଥ ଓ ମୋକ୍ଷ–ଏ ସବୁଥିକୁ ପ୍ରାଧାନ୍ୟ ଦିଆଯାଇଛି । ଜୀବନରେ ଅର୍ଥ ଉପାର୍ଜନଠାରୁ ଧର୍ମ, ସଦାଚାର, ନୈତିକତା, ସଦ୍‌ଭାବ ଆଦି ଗୁଣର ବିକାଶ କରିବା ଅଧିକ ଆବଶ୍ୟକ । ତେଣୁ ଗ୍ରାମ ବହୁଳ ଭାରତ ବର୍ଷରେ କୋଣ ଅନୁକୋଣେ ପ୍ରାର୍ଥନାର ସ୍ଥଳୀ ରହିଛି । ମନ୍ଦିର ମାନଙ୍କ ସହରରେ ଆଜି ଚନ୍ଦ୍ରଶେଖରପୁରଠାରେ ପ୍ରତିଷ୍ଠା ହେଉଥିବା ବିଗ୍ରହ ଦ୍ୱୟ ଏ ଅଞ୍ଚଳର ଅଧିବାସୀମାନଙ୍କର ମାନବୀୟ ମୂଲ୍ୟ ବୃଦ୍ଧି, ସଦ୍ଭାବ ଓ ଭ୍ରାତୃଭାବ ଅଭିବୃଦ୍ଧିରେ ସହାୟକ ହେବ ବୋଲି ରାଜ୍ୟପାଳ ଶ୍ରୀ ରେଡ୍ଡୀ ଆଶା ପ୍ରକାଶ କରିଥିଲେ ।

ଅନ୍ୟମାନଙ୍କ ମଧ୍ୟରେ ଅଭ୍ୟର୍ଥନା କମିଟିର ଅଧ୍ୟକ୍ଷ ଶ୍ରୀ ପ୍ରଫୁଲ୍ଲ ହରିଚନ୍ଦନ, ପେନ୍‌ସନ ଓ ଅଭିଯୋଗ ବିଭାଗର ମାନ୍ୟବର ମନ୍ତ୍ରୀ ଶ୍ରୀ ପ୍ରସନ୍ନ ପାଟ୍ଟଶାଣୀ, ସ୍ୱାମୀ ହରିଚରଣ ଦାସ, ସ୍ୱାମୀ ଶିବାନନ୍ଦ ମହାରାଜ, ପୂର୍ବତନ ବିଧାୟକ ସୁର ରାଉତରାୟ ପ୍ରମୁଖ ଗଣତ ପ୍ରସଙ୍ଗରେ ଧର୍ମ ଓ ଜୀବନର ଗୂଢ଼ ରହସ୍ୟ ଓ ସାମ୍ପ୍ରତିକ ପରିସ୍ଥିତିରେ ଶାନ୍ତି, ମୈତ୍ରୀ ବଢ଼ାଇ ରଖିବାକୁ ଧର୍ମର ଆବଶ୍ୟକତା ଉପରେ ଆଲୋକପାତ କରିଥିଲେ ।



ରବୀନ୍ଦ୍ର ମଣ୍ଡପଠାରେ ଉତ୍କଳ ସଙ୍ଗୀତ ମହାବିଦ୍ୟାଳୟ ଛାତ୍ରଙ୍କ ଦ୍ୱାରା ପରିବେଷଣ କରାଯାଇଥିବା ଏକ ସାଂସ୍କୃତିକ କାର୍ଯ୍ୟକ୍ରମରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ।

OGP-MP-PTS (I&PR) 2-10,000-6-5-1994



ସୂଚନା ଭବନଠାରେ ରାଜ୍ୟପାଳ ଶ୍ରୀ ବି: ସତ୍ୟନାରାୟଣ ରେଡ୍ଡୀ
ବିଶ୍ୱ ସ୍ୱାସ୍ଥ୍ୟ ଦିବସ ପାଳନ ଉତ୍ସବକୁ ଉଦ୍‌ଘାଟନ କରୁଛନ୍ତି ।




ଚିଲିକାଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଜଳ କ୍ରୀଡ଼ା କମ୍ପ୍ଲେକ୍ସକୁ ଉଦ୍‌ଘାଟନ କରୁଛନ୍ତି ।

Licence No. C.R.N.P. 5—Licensed to post without Pre-payment




ଭୋଟରମାନଙ୍କୁ ଫଟୋ ପରିଚୟ ପତ୍ର ଦେବା ସମ୍ପର୍କରେ ଭାରତର ମୁଖ୍ୟ ନିର୍ବାଚନ କମିଶନର
ଶ୍ରୀ ଟି. ଏନ୍. ଶେଷାନ୍ ଜିଲ୍ଲାପାଳ ସମ୍ମିଳନୀରେ ଉଦ୍‌ବୋଧନ ଦେଉଛନ୍ତି । ମୁଖ୍ୟମନ୍ତ୍ରୀ
ଶ୍ରୀ ବିଜୁ ପଟ୍ଟନାୟକ ଉପସ୍ଥିତ ଅଛନ୍ତି ।



ସୂଚନା ଭବନଠାରେ ଅନୁଷ୍ଠିତ ଡକ୍ଟର ଆମ୍ବେଦକରଙ୍କ ୧୦୩ତମ ଜୟନ୍ତୀ ଉତ୍ସବରେ ମୁଖ୍ୟମନ୍ତ୍ରୀ
ଶ୍ରୀ ବିଜୁ ପଟ୍ଟନାୟକ ଉଦ୍‌ବୋଧନ ଦେଉଛନ୍ତି ।


PRINTED AT ORISSA GOVERNMENT PRESS, CUTTACK-753 010

